# ଅକ୍ଟୋବର ବିପ୍ଳବର ପ୍ରଥମ ଜୟନ୍ତୀ ଅବସରରେ ଲେନିନଙ୍କ ଭାଷଣ

(ନଭେମ୍ବର ୬, ୧୯୧୮)

ଭାଷାନ୍ତର

**ଅଧ୍ୟାପକ ନୀଳମଣି ସାହୁ**

**[ଏହା *ସମଦୃଷ୍ଟି* (ଭାଗ ୧୧, ସଂ ୧୦, ନଭେମ୍ବର ୧୬-୩୦, ୨୦୧୬) ରେ ପ୍ରକାଶିତ ହୋଇଥିଲା। ସମ୍ପାଦକଙ୍କୁ ମୋର କୃତଜ୍ଞତା ଜଣାଉଛି।]**

*(ଭାରତ ସହ ବିଶ୍ୱର ଶ୍ରମିକ, ଚାଷୀ, ମୂଲିଆ, ଆଦି ଶ୍ରମଜୀବୀ ଜନଗଣଙ୍କ ପାଇଁ ଋଷ ବିପ୍ଳବର ଗୁରୁତ୍ୱ କଅଣ, ନିହିତାର୍ଥ କଅଣ ସହିଦ ଭଗତ ସିଂ ଓ ତାଙ୍କ ସାଥିମାନେ ଭଲ ରୂପେ ହୃଦୟଙ୍ଗମ କରିଥିଲେ। ତାଙ୍କ ସହ କେତେକ ସାଥୀ ଲାହୋର ଷଡ଼ଯନ୍ତ୍ର ମାମଲାରେ ଅଭିଯୁକ୍ତ ହୋଇ ବିଚାରାଧୀନ ବନ୍ଦୀ ଥିଲେ। ଜାନୁଆରୀ ୨୧ ଲେନିନଙ୍କର ମୃତ୍ୟୁ ଦିବସ। ୧୯୩୦ ମସିହା ଜାନୁଆରୀ ୨୧ ତାରିଖ ଦିନ ଯେତେବେଳେ ସେମାନଙ୍କୁ କୋର୍ଟରେ ହାଜର କରାଗଲା,*

ସେମାନେ ସମସ୍ତେ ମୁଣ୍ଡରେ ନାଲି କନା ବାନ୍ଧିଥିଲେ। ମାଜିଷ୍ଟ୍ରେଟ୍ ଆସନରେ ବସୁ ବସୁ ସେମାନେ "ସମାଜବାଦୀ ବିପ୍ଳବ ଦୀର୍ଘଜୀବୀ ହେଉ", "କମ୍ୟୁନିଷ୍ଟ ଇଣ୍ଟେରନ୍ୟାସନାଲ୍ ଦୀର୍ଘଜୀବୀ ହେଉ", "ଜନତା ଦୀର୍ଘଜୀବୀ ହେଉ", "ଲେନିନଙ୍କ ନାମ କେବେ ହେଁ ମରିବନି", "ସାମ୍ରାଜ୍ୟବାଦର ପତନ ହେଉ" ଆଦି ସ୍ଲୋଗାନ୍ ଦେଲେ। ତା ପରେ ଭଗତ ସିଂ ଟେଲିଗ୍ରାମ୍ ପାଇଁ ଲେଖିଥିବା ଏକ ବାର୍ତ୍ତା ପାଠ କଲେ: "ଲେନିନ ଦିବସରେ ଆମେ ଆନ୍ତରିକ ଅଭିନନ୍ଦନ ଜଣାଉଛୁ ସମସ୍ତଙ୍କୁ, ଯେଉଁମାନେ ମହାନ ଲେନିନଙ୍କର ଚିନ୍ତାଧାରକୁ ଆଗକୁ ବଢ଼େଇ ନେବା ପାଇଁ କିଛି ନା କିଛି କରୁଛନ୍ତି। ଋଷିଆରେ ଯେଉଁ ମହାନ ପରୀକ୍ଷା ଚାଲିଛି ତାର ସଫଳତା କାମନା କରୁ। ଆନ୍ତର୍ଜାତିକ ଶ୍ରମିକ ଶ୍ରେଣୀ ଆନ୍ଦୋଳନର ସ୍ୱର ସହ ଆମ ସ୍ୱର ମିଳଉଛୁ। ଶ୍ରମଜୀବୀ ଶ୍ରେଣୀର ବିଜୟ ହେବ। ପୁଞ୍ଜିବାଦ ପରାସ୍ତ ହେବ। ସାମ୍ରାଜ୍ୟବାଦର ମୃତ୍ୟୁ ହେଉ।" ତା ପରେ ସେ ଏହି ଟେଲିଗ୍ରାମଟିକୁ ତୃତୀୟ ଇଣ୍ଟେରନ୍ୟାସନାଲ୍ ନିକଟକୁ ପଠେଇବା ପାଇଁ ମାଜିଷ୍ଟ୍ରେଟ୍‌ଙ୍କୁ କହିଥିଲେ।

ଭଗତ ସିଂ ଭାରତରେ ସମାଜବାଦ ଚାହିଁଥିଲେ। ଗୋରା ସାହେବଙ୍କ ବଦଳରେ କଳା ସାହେବଙ୍କୁ ଚାହିଁ ନଥିଲେ। ଚାହିଁଥିଲେ ଏକ ଶ୍ରମିକ ଚାଷୀ ମୂଲିଆଙ୍କ ସରକାର। କୋର୍ଟରେ ତାଙ୍କ ବକ୍ତବ୍ୟ ରଖି ଖବରକାଗଜ ଜରିଆରେ ସମାଜବାଦର ବାର୍ତ୍ତାକୁ ଭାରତର ଜନଗଣଙ୍କ ନିକଟରେ ପହଞ୍ଚେଇବା ଉଦ୍ଦେଶ୍ୟରେ ପାର୍ଲିଆମେଣ୍ଟରେ ବୋମା ଫିଙ୍ଗି

*ପୋଲିସ ହାତରେ ଧରା ଦେଇ ଭାରତର ଶ୍ରମିକ ଚାଷୀ ମୂଲିଆଙ୍କ ହାତରେ ନିଜ ଜୀବନକୁ ଉତ୍ସର୍ଗ କରି ଫାଶିକାଠରେ ଝୁଲି ଯାଇଥିଲେ। ତେଣୁ ଋଷ ବିପ୍ଳବର ଶତବାର୍ଷିକୀ ପାଳନ ଅବସରରେ ଭଗତ ସିଂ ଓ ତାଙ୍କ ସାଥୀମାନଙ୍କ ବଳିଦାନକୁ ମନେ ପକେଇ ଭାରତ ପାଇଁ ଋଷ ବିପ୍ଳବର ତାତ୍ପର୍ଯ୍ୟ ସମ୍ପର୍କରେ ଆଲୋଚନାର ଆବଶ୍ୟକତା ରହିଛି।)*

ସାଥୀଗଣ,

ଆମେ ଆମ ବିପ୍ଳବର ଜୟନ୍ତୀ ପାଳନ କରୁଛେ ଏପରି ଏକ ସମୟରେ ଯେତେବେଳେ ଆନ୍ତର୍ଜାତିକ ଶ୍ରମିକ-ଶ୍ରେଣୀ ଆନ୍ଦୋଳନରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଘଟଣାମାନ ଘଟି ଚାଲିଛି। ଏଣୁ, ଏପରି କି ଶ୍ରମିକ ଶ୍ରେଣୀ ଓ ସାଧାରଣ ଶ୍ରମଜୀବୀ ମଣିଷମାନଙ୍କ ମଧ୍ୟରେ ଥିବା ଅବିଶ୍ୱାସୀ ଓ ସନ୍ଦେହୀ ଲୋକମାନଙ୍କୁ ବି ଏହା ସ୍ପଷ୍ଟରୂପେ ଦେଖା ଗଲାଣି ଯେ ଏହି ବିଶ୍ୱଯୁଦ୍ଧର ଅନ୍ତ ଦଦରା, ଘଷରା ସରକାରର ତଥା  ଶାସକ ବୁର୍ଜୁଆ ଶ୍ରେଣୀର ଚୁକ୍ତିନାମା ବା ଦମନ ଦ୍ୱାରା ହେବନି ଏବଂ ଏହା ବି ସେମାନଙ୍କ ପାଇଁ ସ୍ପଷ୍ଟ ଯେ ଏହି ଯୁଦ୍ଧ ଋଷିଆ ସହ ସାରା ବିଶ୍ୱକୁ ଏକ ବିଶ୍ୱବ୍ୟାପୀ ଶ୍ରମଜୀବୀ ବିପ୍ଳବ ଆଡ଼କୁ, ପୁଞ୍ଜି ଉପରେ ଶ୍ରମିକର ବିଜୟ ଆଡ଼କୁ ବାଟ କଢ଼ଉଛି। ପୁଞ୍ଜି ବିଶ୍ୱକୁ ରକ୍ତରଞ୍ଜିତ କରିଛି, ଏବଂ, ଜର୍ମାନ ସାମ୍ରାଜ୍ୟବାଦର ହିଂସା ଓ ଦୌରାତ୍ମ୍ୟ ପରେ, ଏବେ ଅଷ୍ଟ୍ରିଆ ଓ ଜର୍ମାନୀର ସହାୟତାରେ ବ୍ରିଟିଶ୍-ଫରାସୀ ସାମ୍ରାଜ୍ୟବାଦ ସେଇ ନୀତି ଅନୁସରଣ କରୁଛି।

ଆଜି ଆମେ, ବିପ୍ଳବର ଜୟନ୍ତୀ ପାଳନ କରୁଥିବା ବେଳେ, ଯେଉଁ ବାଟ ଦେଇ ବିପ୍ଳବ ଗତି କରିଛି ସେଆଡ଼କୁ ନଜର ପକେଇବା ଉଚିତ ମନେ ହୁଏ। ଆମେ ଆମର ବିପ୍ଳବ ଆରମ୍ଭ କଲେ ଏକ ଅସାଧାରଣ, କଠିନ ପରିସ୍ଥିତିରେ, ଯାହାକୁ ବିଶ୍ୱର ଅନ୍ୟ କୌଣସି ଶ୍ରମିକ ବିପ୍ଳବ କେବେ ବି ସାମନା କରିବନି। ତେଣୁ ଯେଉଁ ବାଟ ଦେଇ ଆମେ ଆସିଲେ ସେଇ ବାଟର ସାମଗ୍ରୀକ ପର୍ଯ୍ୟାଲୋଚନା କରିବା ପାଇଁ, ଏହି ସମୟରେ ଆମେ କଅଣ ହାସଲ କରିଛେ ତାର ସମୀକ୍ଷା କରିବା ପାଇଁ, ବିପ୍ଳବର ଏଇ ଏକ ବର୍ଷ ଭିତରେ ଆମେ ଆମର ମୁଖ୍ୟ, ଆମର ବାସ୍ତବ, ଆମର ନିର୍ଣ୍ଣାୟକ ଓ ମୌଳିକ ଲକ୍ଷ୍ୟ ହାସଲ ପାଇଁ କେଉଁଯାଏ ପ୍ରସ୍ତୁତି କରିଛେ ତାର ଆଲୋଚନା କରିବା ପାଇଁ ପ୍ରୟାସ କରିବା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ। ଆମକୁ ବିଶ୍ୱ ଶ୍ରମଜୀବୀ ଓ ସମାଜବାଦୀ ସେନାର ଏକ ଟୁକୁରା, ଏକ ଅଙ୍ଗ ହେବାକୁ ହେବ। ଆମେ ସର୍ବଦା ଅନୁଭବ କରିଛୁ ଯେ ଋଷୀୟ ଶ୍ରମିକ ଶ୍ରେଣୀର କୌଣସି ବିଶେଷ ଯୋଗ୍ୟତା ଯୋଗୁଁ ଅବା ତାହା ଅନ୍ୟମାନଙ୍କ ଅପେକ୍ଷା ଆଗୁଆ ଥିବା ଯୋଗୁଁ ବିପ୍ଳବ ଆରମ୍ଭ କରିବା ଆମ ଭାଗରେ ପଡ଼ିନି। — ବିଶ୍ୱବ୍ୟାପୀ ସଂଘର୍ଷ ହିଁ ତାକୁ ଋଦ୍ଧିମନ୍ତ କରିଥିଲା। ଅପର ପକ୍ଷରେ, କେବଳ ପୁଞ୍ଜିବାଦର କିମ୍ଭୂତକିମାକାର ଦୁର୍ବଳତା ଓ ପଛୁଆ ଅବସ୍ଥା ତଥା ସାମରିକ ରଣକୌଶଳଗତ କିମ୍ଭୂତକିମାକାର ଚାପ ଯୋଗୁଁ ଘଟନାକ୍ରମେ, ଅନ୍ୟ ଟୁକୁରାଗୁଡ଼ିକ ଆମ ସହ ଯୋଗ ଦେଇ ବିଦ୍ରୋହ କରିବା ପର୍ଯ୍ୟନ୍ତ ଅପେକ୍ଷା ନକରି, ଆମକୁ ଆଗକୁ ମାଡ଼ି ଯିବାକୁ ପଡ଼ିଥିଲା। ଆଗାମୀ ବିପ୍ଳବରେ ଆମେ ସାମନା କରିବାକୁ ଥିବା ସଂଘର୍ଷଗୁଡ଼ିକ ପାଇଁ ଆମେ କି ଧରଣର ପ୍ରସ୍ତୁତି କରିଛେ ତାହାର ହିସାବ ନିକାଶ ପାଇଁ ଆମେ ଏଇ ପର୍ଯ୍ୟାଲୋଚନା କରୁଛେ।

ତେଣୁ, ସାଥୀଗଣ, ଗତ ବର୍ଷକ ମଧ୍ୟରେ କି କି ବଡ଼ ଧରଣର ପରିବର୍ତ୍ତନ କରିଛେ ବୋଲି ଯେତେବେଳେ ଆମେ ନିଜକୁ ପଚ଼ାରୁ ଆମେ ଏହା କହିବା ପାଇଁ ମନେ ପକଉ: ଶ୍ରମିକଙ୍କ କର୍ତ୍ତୃତ୍ୱାଧୀନ ଠାରୁ (ଯାହା ଶ୍ରମିକ ଶ୍ରେଣୀର ପ୍ରଥମ ପଦକ୍ଷେପ), ଏବଂ ଦେଶର ସମସ୍ତ ସମ୍ପଲକୁ ସମ୍ଭାଳିବା ଠାରୁ, ଆମେ ବର୍ତ୍ତମାନ ଶିଳ୍ପ କ୍ଷେତ୍ରରେ ଶ୍ରମିକ ପରିଚାଳନା ସୃଷ୍ଟି କରିବା ଦ୍ୱାରଦେଶରେ ପହଞ୍ଚିଛୁ; ସଧାରଣ କୃଷକଙ୍କ ଜମି ପାଇଁ ସଂଘର୍ଷ, ଜମିଦାର ବିରୋଧୀ କୃଷକ ଆନ୍ଦୋଳନଠାରୁ (ଯାହା ଜାତୀୟ ବୁର୍ଜୁଆ–ଗଣତାନ୍ତ୍ରିକ ଚରିତ୍ରର ଥିଲା) ଯାଇ ଆମେ ବର୍ତ୍ତମାନ ଏପରି ଏକ ସ୍ଥିତିରେ ପହଞ୍ଚିଛୁ ଯେଉଁଠି ଗ୍ରାମାଞ୍ଚଳର ସର୍ବହରା ଓ ଅର୍ଦ୍ଧ–ସର୍ବହରା ଲୋକେ ନିଜକୁ ଅଲଗା କଲେଣି: ଯେଉଁମାନେ ପରିଶ୍ରମୀ ଓ ଶୋଷିତ ସେମାନେ ନିଜକୁ ଅନ୍ୟମାନଙ୍କ ଠାରୁ ଅଲଗା କରି ଏକ ନୂଆ ଜୀବନ ଗଢ଼ି ତୋଳିବାରେ ଲାଗିଛନ୍ତି; ନିହାତି ଶୋଷିତ ଗ୍ରାମୀଣ ଲୋକେ ବୁର୍ଜୁଆ ଓ ନିଜ ନିଜ ଗ୍ରାମର କୁଲାକ୍ [ଧନୀ ଚାଷୀ] ବୁର୍ଜୁଆଙ୍କ ସହ ମରଣାନ୍ତକ ସଂଘର୍ଷରେ ଜୁଟି ଯାଇଛନ୍ତି।

ପୁଣି, ସୋଭିୟେତ୍ ସଂଗଠନର ପ୍ରଥମ ପଦକ୍ଷେପଗୁଡ଼ିକ ନିଆଯିବା ପରେ ଆମେ ଏପରି ଏକ ସ୍ତରରେ ଆସି ପହଞ୍ଚିଛୁ ଯେଉଁଠି, ଏହି କଂଗ୍ରେସର ଉଦ୍‌ଘାଟନ ବେଳେ ସାଥୀ ସ୍ୱେର୍ଦଲୋଭଙ୍କ ମନ୍ତବ୍ୟ ପ୍ରକାରେ, ଯେତେ ଦୂର ଦୂରାନ୍ତ ହେଉ ନା କାହିଁକି ଋଷିଆରେ ଏମିତି କୌଣସି ସ୍ଥାନ ନାହିଁ ଯେଉଁଠି, ଶ୍ରମଜୀବୀ ଓ ନିଷ୍ପେଷିତ ଜନଗଣଙ୍କର ଦୀର୍ଘ ସଂଘର୍ଷପୂର୍ଣ୍ଣ ଅଭିଜ୍ଞତାରୁ ଜାତ, ସୋଭିୟେତ୍ କ୍ଷମତା ନିଜ ସ୍ଥିତିକୁ ଜାହିର୍ କରିନାହିଁ ଓ ତାହା ସୋଭିୟେତ୍ ସମ୍ବିଧାନର ଅବିଚ୍ଛିନ୍ନ ଅଙ୍ଗ ହୋଇନାହିଁ।

ଗତ ଚାରି ବର୍ଷର ଯୁଦ୍ଧ ଆମକୁ ନିହାତି ଅସୁରକ୍ଷିତ କରି ଦେଇଥିଲା, ଯାହା ଶୋଷିତ ଜନଗଣଙ୍କ ମନରେ ଘୃଣା ଓ ବିମୁଖତା ଉଦ୍ରେକ କରିବା ସଙ୍ଗେ ସଙ୍ଗେ ସେମାନଙ୍କୁ ଭୟଙ୍କର ଭାବେ ଦୁର୍ବଳ ଓ କ୍ଳାନ୍ତ କରି ଦେଇଥିଲା; ଆମ ବିପ୍ଳବକୁ ବି ଏକ ନିତାନ୍ତ କଠିନ ଓ କଠୋର ସମୟ ଭିତରକୁ ଠେଲି ଦେଇଥିଲା ଯେତେବେଳେ ଆମେ ଅଷ୍ଟ୍ରିଆ ଓ ଜର୍ମାନ ସାମ୍ରାଜ୍ୟବାଦର ପ୍ରହାର ସାମନାରେ ଅସୁରକ୍ଷିତ ଥିଲେ। କିନ୍ତୁ ଆଜି ଆମ ପାଖରେ ଶକ୍ତିଶାଳୀ ଲାଲ ସେନା ରହିଛି। ସର୍ବୋପରି, ଏବଂ ସବୁଠୁଁ ବଳି ଗୁରୁତ୍ୱପୂର୍ଣ୍ଣ, ଆନ୍ତର୍ଜାତିକ ସ୍ତରରେ ଆମର ଏକଘରିକିଆ ସ୍ଥିତିରୁ, ଯେଉଁଥି ପାଇଁ ଅକ୍ଟୋବର ମାସରେ ଓ ଏ ବର୍ଷ ଆରମ୍ଭରେ ଦୁଃଖ ପାଇଲେ, ଏବେ ଏପରି ଏକ ସ୍ଥିତିରେ ପହଞ୍ଚିଛେ ଯେଉଁଠି, ଆମର ଏକମାତ୍ର ଅଥଚ୍ ମିତ୍ରତାରେ ଦୃଢ଼, ବିଶ୍ୱର ଶ୍ରମଜୀବୀ ଓ ପୀଡ଼ିତ ଜନତା ପରିଶେଷରେ ବିଦ୍ରୋହ କରିଛନ୍ତି। ଆମେ ଏପରି ଏକ ସ୍ଥିତିରେ ପହଞ୍ଚିଛେ, ଯେଉଁଠି ଭିଏନା ଓ ବର୍ଲ୍ଲିନ୍‌ରେ ବିକଶିତ ହେଉଥିବା ଶ୍ରମିକ ବିପ୍ଳବର କ୍ଷିପ୍ରତାର ଚାପ ବଳରେ ପଶ୍ଚିମ ୟୁରେପୀୟ ଶ୍ରମିକ ଶ୍ରେଣୀର ଲିବ୍‌କ୍ନେଖଟ୍ ଓ ଏଡ୍‌ଲେର୍ ଭଳିଆ ନେତାମାନେ, ଯେଉଁମାନେ ସାମ୍ରାଜ୍ୟବାଦୀ ଯୁଦ୍ଧ ବିରୁଦ୍ଧରେ ଜନମତ ଏକାଠି କରିବାରେ ସାହସ ଏବଂ ବୀରତ୍ୱ ଦେଖେଇ ମାସ ମାସ ଧରି ଜେଲ୍‌ରେ ସଢୁଥିଲେ, ଛାଡ଼ ପାଇଛନ୍ତି। ଏକଘରିକିଆ ହେବା ପରିବର୍ତ୍ତେ, ଆମେ ବର୍ତ୍ତମାନ ଏମିତି ଏକ ସ୍ଥିତିରେ ପହଞ୍ଚିଛେ ଯେଉଁଠି ଆମେ ଆମର ଆନ୍ତର୍ଜାତିକ ମିତ୍ରମାନଙ୍କର ପାଖାପାଖି, କାନ୍ଧକୁ କାନ୍ଧ ମିଳେଇ, ପାଦକୁ ପାଦ ମିଳେଇ ଆଗେଇ ଚାଲିଛେ। ଏଗୁଡ଼ିକ ହେଉଛି ଗତ ବର୍ଷର ମୁଖ୍ୟ ସଫଳତା।

ବର୍ତ୍ତମାନ ମୁଁ ଆମେ ଅତିକ୍ରମ କରିଥିବା ପଥ ଓ ଏହି ମଧ୍ୟବର୍ତ୍ତୀକାଳୀନ ସ୍ଥିତି ସମ୍ପର୍କରେ କେଇ ପଦ କଥା କହିବା ପାଇଁ ଚାହୁଁଛି।

ଆରମ୍ଭରେ ଆମର ସ୍ଲୋଗାନ୍ ଥିଲା ଶ୍ରମିକଙ୍କ କର୍ତ୍ତୃତ୍ୱାଧୀନ। କେରେନସ୍କୀ ସରକାରଙ୍କ ସମସ୍ତ ପ୍ରତିଶ୍ରୁତି ସତ୍ତ୍ୱେ, ପୁଞ୍ଜିପତିମାନେ ବିଶୃଙ୍ଖଳା ବୃଦ୍ଧି କରିବାରେ ଓ ଉତ୍ପାଦନ କ୍ଷେତ୍ରରେ ଅନ୍ତର୍ଘାତୀ କାର୍ଯ୍ୟରେ ଜୁଟି ରହିଥିବା ପରିପ୍ରେକ୍ଷିରେ ଆମେ ସେକଥା କହିଥିଲୁ। ତା ନ କରିଥିଲେ ବର୍ତ୍ତମାନ ଆମେ ଯାହା ଦେଖୁଛେ ସର୍ବନାଶ ହୋଇ ଯାଆନ୍ତା। ତେଣୁ ପ୍ରତ୍ୟେକ ସମାଜବାଦୀ, ଶ୍ରମିକ ସରକାରର ପ୍ରଥମ, ମୌଳିକ ପଦକ୍ଷେପ ହେଲା, ଶ୍ରମିକଙ୍କ କର୍ତ୍ତୃତ୍ୱାଧୀନ। ସମଗ୍ର ଶିଳ୍ପ କ୍ଷେତ୍ରରେ ସମାଜବାଦ ଆମେ ହଠାତ୍ ଘୋଷଣା କରି ନଥିଲୁ, କାରଣ ସମାଜବାଦ କେବଳ ସେତେବେଳେ ଦାନା ବାନ୍ଧିବ, ଦୃଢ଼ ହେବ, ଯେତେବେଳେ ଶ୍ରମିକ ଶ୍ରେଣୀ ଆର୍ଥିକ ବ୍ୟବସ୍ଥାର ପରିଚାଳନା ଶିଖିଥିବ, ଏବଂ ଯେତେବେଳେ ଶ୍ରମଜୀବୀ ଜନଗଣଙ୍କର କ୍ଷମତା ଦୃଢ଼ଭାବେ ପ୍ରତିଷ୍ଠିତ ହୋଇଥିବ। ତାହା ବିନା ସମାଜବାଦ ଏକ ସୁଖଦ କଳ୍ପନା ଛଡ଼ା ଆଉ କିଛି ନୁହେଁ। ଶ୍ରମିକଙ୍କ କର୍ତ୍ତୃତ୍ୱାଧୀନ ଏକ ପରସ୍ପରବିରୋଧୀ ତଥା ଅସମ୍ପୂର୍ଣ୍ଣ ପଦକ୍ଷେପ ବୋଲି ହୃଦୟଙ୍ଗମ କରୁଥିବା ସତ୍ତ୍ୱେ ଆମେ ତାର ପ୍ରଚଳନ କରିଥିଲୁ, କାରଣ ତାହା ଏକ ଆବଶ୍ୟକୀୟ ପଦକ୍ଷେପ ଥିଲା। — ଏତେ ବଡ଼ ବିରାଟ ଦେଶରେ ଖୋଦ୍ ଶ୍ରମିକମାନେ ନିଜେ ଶୋଷଣକାରୀଙ୍କ ବିନା ସହାୟତାରେ, ପୁଣି ଶୋଷଣକାରୀଙ୍କ ବିରୋଧୀ ହୋଇ, କାରଖାନାମାନ ଗଢ଼ି ତୋଳିବା ଭଳି ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱର ସାମନା କରିବା ଆବଶ୍ୟକତା ରହିଥିଲା।

ପ୍ରତ୍ୟେକେ ଯେଉଁମାନେ ଏହି କାର୍ଯ୍ୟରେ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ଭାଗ ନେଇଥିଲେ, ପ୍ରତ୍ୟେକେ ଯେଉଁମାନେ ପୁରୁଣା ପୁଞ୍ଜିବାଦୀ ରାଜୁତିର ନିର୍ଯ୍ୟାତନା ଓ ନୃଶଂସତା ଭିତରେ ଜୀବନ ବିତେଇଥିଲେ, ବହୁତ କିଛି ଶିଖିଛନ୍ତି। ଆମେ ଜାଣୁ, ଯାହା ହାସଲ ହୋଇଛି ତାହା ନଗଣ୍ୟ। ଆମେ ଜାଣୁ, ଏହି ନିହାତି ପଛୁଆ ଓ ଦରିଦ୍ର ଦେଶରେ ଯେଉଁଠି ଶ୍ରମିକମାନଙ୍କ ପଥରେ ଅଗଣିତ ବାଧା ଓ ପ୍ରତିବନ୍ଧକ ସୃଷ୍ଟି କରାଯାଇ ଥିଲା, ଶିଳ୍ପ ପରିଚାଳନା ଶିଖିବା ପାଇଁ ସେମାନେ ଦୀର୍ଘ ସମୟ ନେବେ। ତଥାପି ଖୋଦ୍ ଶ୍ରମିକମାନେ ନିଜେ ଏହି କାର୍ଯ୍ୟର ସାମନା କରିଥିବା, ଓ ଶ୍ରମିକଙ୍କ କର୍ତ୍ତୃତ୍ୱାଧୀନରୁ (ଯାହା ଶିଳ୍ପର ପ୍ରମୁଖ ବିଭାଗଗୁଡ଼ିକରେ ବିଭ୍ରାଟିଆ, ବିଶୃଙ୍ଖଳିତ, ମାନ୍ଧାତାଯୁଗୀଆ ତଥା ଅଧପନ୍ତରିଆ ହେବା ପାଇଁ ବାଧ ହୋଇଥିଲା) ଆମେ ବର୍ତ୍ତମାନ ଜାତୀୟ ସ୍ତରରେ ଶ୍ରମିକଙ୍କ ଶିଳ୍ପ ପରିଚାଳନାରେ ପହଞ୍ଚିଥିବା, ଆମ ବିଚାରରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଓ ମୂଲ୍ୟବାନ କଥା।

ଟ୍ରେଡ୍ ୟୁନିଅନଗୁଡ଼ିକର ସ୍ଥିତି ବଦଳି ଯାଇଛି। ସମସ୍ତ ମାନେଜ୍‌ମେଣ୍ଟ ବୋର୍ଡ ଓ କେନ୍ଦ୍ର ସଂସ୍ଥାଗୁଡ଼ିକୁ, ପୁଞ୍ଜିବାଦର ଧ୍ୱଂସପ୍ରାପ୍ତ ତଥା ଉଦ୍ଦେଶ୍ୟମୂଳକ ଭାବେ ଅନ୍ତର୍ଘାତୀ କାର୍ଯ୍ୟର ଶିକାର ହୋଇଥିବା କାରଖାନାଗୁଡ଼ିକୁ ହାତକୁ ନେଇଥିବା ନୂଆ ସଂଗଠନଗୁଡ଼ିକୁ ପ୍ରତିନିଧି ପଠେଇବା ହେଲା ସେଗୁଡ଼ିକର ମୂଖ୍ୟ କାମ। ସେଇ ବୁଦ୍ଧିଜୀବୀମାନଙ୍କର, ଯେଉଁମାନେ ସେମାନଙ୍କର ଜ୍ଞାନ ଓ ଶିକ୍ଷା (ଯାହା ମାନବଜାତିର ଜ୍ଞାନଭଣ୍ଡାରର ପରିଣତି) କୁ ଏକ ଶୋଷକ ବିହୀନ ସାମାଜିକ ମାଲିକାନା ଉପରେ ବ୍ୟବସ୍ଥିତ ଅର୍ଥ ବ୍ୟବସ୍ଥା ଗଢ଼ି

ତୋଳିବାରେ ଜନଗଣଙ୍କୁ ସାହାଯ୍ୟ କରିବାରେ ଖଟେଇବା ପରିବର୍ତ୍ତେ ଆରମ୍ଭରୁ ହିଁ ଉଦ୍ଦେଶ୍ୟମୂଳକ ଭାବେ ସମାଜବାଦର ଉଦ୍ଦେଶ୍ୟକୁ ପଣ୍ଡ କରିବାରେ ଖଟେଇଛନ୍ତି, ସେଇମାନଙ୍କ ସହାୟତା ବିନା ଟ୍ରେଡ୍ ୟୁନିଅନଗୁଡ଼ିକ ନିଜର ଦକ୍ଷତା ପ୍ରମାଣିତ କରିଛନ୍ତି। ଶାସନ କାର୍ଯ୍ୟ ସମ୍ଭାଳିବା ପାଇଁ ଲେଶମାତ୍ର ବି ଟ୍ରେନିଂ ପାଇ ନଥିବା ଶ୍ରମିକମାନଙ୍କୁ ବାଧା ଦେବାରେ ସେମାନେ ସେମାନଙ୍କ ଜ୍ଞାନକୁ ଖଟେଇବା ପାଇଁ ଚାହିଁଥିଲେ।

ବର୍ତ୍ତମାନ ଆମେ କହି ପାରିବା ଯେ ମୁଖ୍ୟ ପ୍ରତିବନ୍ଧକକୁ ହଟେଇ ଦିଆ ଯାଇଛି। ଏହା ଏକ ଅତ୍ୟନ୍ତ କଠିନ କାର୍ଯ୍ୟ ଥିଲା, ତେବେ ବି ବୁର୍ଜୁଆ ଶ୍ରେଣୀ ଆଡ଼କୁ ଢଳୁଥିବା ସମସ୍ତ ଲୋକଙ୍କ ଅନ୍ତର୍ଘାତୀ କାର୍ଯ୍ୟକୁ ରୋକାଯାଇ ପାରିଛି। ଭୟଙ୍କର ଅସାମର୍ଥ୍ୟ ସତ୍ତ୍ୱେ, ଏହି ମୌଳିକ ପଦକ୍ଷେପ ନେବାରେ, ସମାଜବାଦର ଭିତ୍ତି ପକାଇବାରେ ଶ୍ରମିକମାନେ ସଫଳ ହୋଇଛନ୍ତି। ଆମେ କିଛି ବଢ଼େଇ ଚଢ଼େଇ କହୁନୁ, ସତ କହିବା ପାଇଁ ବି ଡରୁନୁ। ଏହା ସତ ଯେ ଆମର ଅନ୍ତିମ ଲକ୍ଷ୍ୟ ଦୃଷ୍ଟିରୁ ଯାହା ହାସଲ ହୋଇଛି ତାହା ଅତି ନଗଣ୍ୟ। କିନ୍ତୁ ମୂଳଦୁଆକୁ ଦୃଢ଼ କରିବା ପାଇଁ ବହୁତ କିଛି, ବହୁତ ବହୁତ କିଛି କରା ଯାଇଛି। ସମାଜବାଦ କଥା କହିଲା ବେଳେ ଆମେ କହି ପାରିବୁନି ଯେ ଶ୍ରମିକମାନଙ୍କର ବହୁଳାଂଶ, ପୁସ୍ତକ ପୁସ୍ତିକା ପଢ଼ିଥିବା ଅର୍ଥରେ, ରାଜନୈତିକ ସଚେତନତା ଥାଇ ଏହି ଭିତ୍ତି ପକେଇଛନ୍ତି। ରାଜନୈତିକ ସଚେତନତା କହିଲେ ଆମେ ବୁଝୁ ଯେ ଏହି ଦୁଃସାଧ କାର୍ଯ୍ୟ ସେମାନେ ସେମାନଙ୍କର ନିଜ ହାତରେ, ସେମାନଙ୍କର ନିଜ ଉଦ୍ୟମରେ କରିଛନ୍ତି। ଅବଶ୍ୟ ସେମାନେ ହଜାର ହଜାର ସଂଖ୍ୟାରେ ଗୁରୁତର ତ୍ରୁଟି କରିଛନ୍ତି, କିନ୍ତୁ ପ୍ରତ୍ୟେକଟି ତ୍ରୁଟି

ପାଇଁ ସେମାନେ ନିଜେ ହିଁ ଦୁଃଖ ପାଇଛନ୍ତି। ତ୍ରୁଟି ସେମାନଙ୍କୁ ତାଲିମ୍ ଦେଇଛି, ଇସ୍ପାତ୍ ଭଳି ଦୃଢ଼ କରିଛି ଶିଳ୍ପ ପରିଚାଳନାକୁ ସଂଗଠିତ କରିବା ପାଇଁ, ଯାହା ବର୍ତ୍ତମାନ ଏକ ଦୃଢ଼ ଭିତ୍ତି ଉପରେ ପ୍ରତିଷ୍ଠିତ ହୋଇ ସାରିଛି। ସେମାନେ ସେମାନଙ୍କ କାମର ଯତ୍ନ ନେଇଛନ୍ତି। ବର୍ତ୍ତମାନଠୁଁ କାମ ହେବ ଭିନ୍ନ ଧରଣର, କାରଣ ବର୍ତ୍ତମାନ ସମସ୍ତ ଶ୍ରମିକ, କେବଳ ନେତା ଓ ଆଗୁଆ ଶ୍ରମିକ ନୁହନ୍ତି, ଶ୍ରମିକମାନଙ୍କର ବିରାଟ ବିରାଟ ଅଂଶ ଜାଣନ୍ତି ଯେ ସେମାନେ ନିଜେ ନିଜ ହାତରେ ସମାଜବାଦ ଗଢ଼ୁଛନ୍ତି ଓ ତାହାର ଭିତ୍ତି ପକେଇଛନ୍ତି, ଓ ଦେଶର କୌଣସି ଶକ୍ତି ତାର ଯତ୍ନ ନେବାରେ ସେମାନଙ୍କୁ ବାଧା ଦେଇ ପାରିବନି।

ଶିଳ୍ପ କ୍ଷେତ୍ରରେ ଆମେ ମହାନ ଅସୁବିଧାର ସାମନା କରିଥାଇ ପାରୁ, କିନ୍ତୁ ଆମକୁ ଏପରି ଏକ ପଥ ଅତିକ୍ରମ କରିବାକୁ ପଡ଼ିଥିଲା ଯାହା ଅନେକଙ୍କୁ ବହୁତ ଦୀର୍ଘ ଜଣା ପଡ଼ିଥିଲେ ବି ବାସ୍ତବରେ ତାହା ଛୋଟିଆ ଥିଲା ଓ ଶ୍ରମିକଙ୍କ କର୍ତ୍ତୃତ୍ୱାଧୀନରୁ ଶ୍ରମିକଙ୍କ ପରିଚାଳନାରେ ପହଞ୍ଚେଇଥିଲା, ତଥାପି ଗ୍ରାମାଞ୍ଚଳର ପଛୁଆଠୁଁ ଆହୁରି ପଛୁଆ ଅଞ୍ଚଳଗୁଡ଼ିକରେ ଅଧିକରୁ ଅଧିକ ପ୍ରସ୍ତୁତିଗତ କାର୍ଯ୍ୟ କରିବାକୁ ପଡ଼ିଥିଲା। କେହି ବି, ଯିଏ ଗ୍ରାମୀଣ ଜୀବନର ଅଧ୍ୟୟନ କରିଥିବ ଓ ଚାଷୀମାନଙ୍କ ସଂସ୍ପର୍ଶରେ ଆସିଥିବ, କହିବ ଯେ ସହରୀୟ ଅକ୍ଟୋବର ବିପ୍ଳବ ୧୯୧୮ ମସିହାର ଗ୍ରୀଷ୍ମ ଓ ଶରତ ଋତୁରେ ହିଁ ବାସ୍ତବରେ ଗ୍ରାମୀଣ ଅକ୍ଟୋବର ବିପ୍ଳବ ହୋଇଥିଲା। ଏବଂ ପେଟ୍ରୋଗ୍ରାଦ୍‌ର ଶ୍ରମିକଗଣ ଓ ପେଟ୍ରୋଗ୍ରାଦ୍ ଦୁର୍ଗର ସୈନିକମାନେ କ୍ଷମତା ଅକ୍ତିଆର କଲାବେଳେ ସମ୍ପୂର୍ଣ୍ଣରୂପେ ବୁଝିଥିଲେ ଯେ ଗ୍ରାମୀଣ ସାଂଗଠନିକ କାର୍ଯ୍ୟରେ

ବିରାଟ ଆକାରର ନିହାତି ଅପ୍ରତ୍ୟାଶିତ ଅସୁବିଧାମାନ ମୁଣ୍ଡ ଟେକିବ ଓ ସେଠାରେ ଆମର ପ୍ରଗତି ଧୀର ମନ୍ଥର ହେବା ପାଇଁ ବାଧ୍ୟ। ଏହା ବି ଜାଣିଥିଲେ ଯେ ଆଦେଶ ବଳରେ ସମାଜବାଦୀ ଚାଷ ପ୍ରବେଶ କରେଇବା ମହା ମୂର୍ଖାମୀ ହେବ, କାରଣ ଏକ ନଗଣ୍ୟ ସଂଖ୍ୟାର କୁସଂସ୍କାରମୁକ୍ତ ଚାଷୀ ଆମକୁ ସମର୍ଥନ କରି ପାରନ୍ତି, ଅଥଚ୍ ଅପାର ସଂଖ୍ୟାର ଚାଷୀଙ୍କ ଦୃଷ୍ଟି ସାମନାରେ ତ ଏଇ ଭଳିଆ କୌଣସି ଉଦ୍ଦେଶ୍ୟ ନାହିଁ। ତେଣୁ ବିପ୍ଳବକୁ ଆଗକୁ ବଢ଼େଇବା ପାଇଁ ଯାହା ନିହାତି ଆବଶ୍ୟକ ତାରି ଭିତରେ ନିଜକୁ ସୀମିତ ରଖିଛୁ — କୌଣସି ଭାବରେ ବି ଲୋକଙ୍କ ବିକାଶର ସୀମା ଲଙ୍ଘିବାକୁ ଚେଷ୍ଟା କରିନୁ, ସେମାନଙ୍କର ନିଜର ଅଭିଜ୍ଞତା ଓ ସେମାନଙ୍କର ନିଜର ସଂଗ୍ରାମର ଫଳ ସ୍ୱରୂପ ସେମାନଙ୍କର ଗତି ଆଗକୁ ହେବା ପର୍ଯ୍ୟନ୍ତ ଅପେକ୍ଷା କରିଛୁ। ଅକ୍ଟୋବରରେ ଚାଷୀମାନଙ୍କର ଯୁଗ ଯୁଗର ଶତ୍ରୁ ସମ୍ଭ୍ରାନ୍ତ ଜମିଦାର ଓ ବଡ଼ ବଡ଼ ଜମି ମାଲିକମାନଙ୍କୁ ଗୋଟିଏ ଝଟକାରେ ସଫା କରିବା କାର୍ଯ୍ୟ ଭିତରେ ହିଁ ଆମ କାମକୁ ସୀମିତ ରଖିଥିଲୁ। ଏହା ଏପରି ଏକ ସଂଘର୍ଷ ଥିଲା ଯେଉଁଥିରେ ସମସ୍ତ ଚାଷୀ ଭାଗ ନେଇଥିଲେ। ଏ ପର୍ଯ୍ୟନ୍ତ ଚାଷୀମାନେ ସର୍ବହରା, ଅର୍ଦ୍ଧ-ସର୍ବହରା, ଗରିବ ଚାଷୀ ଓ ବୁର୍ଜୁଆରେ ଭାଗ ଭାଗ ହୋଇ ନଥିଲେ। ଆମେ ସମାଜବାଦୀମାନେ ଜାଣିଥିଲୁ ଯେ ଏଇ ଭଳିଆ ଏକ ସଂଘର୍ଷ ଛଡ଼ା ସମାଜବାଦ ସମ୍ଭବ ନୁହେଁ, କିନ୍ତୁ ଆମେ ଏହା ବି ଅନୁଭବ କରିଥିଲୁ ଯେ ଜାଣିବାଟା ଯଥେଷ୍ଟ ନୁହେଁ — କୋଟି କୋଟିଙ୍କ ସାମନାରେ ଏହାକୁ ପ୍ରମାଣିତ କରିବାକୁ ହେବ, ତାହା ପୁଣି ସେମାନଙ୍କର ନିଜର ଅଭିଜ୍ଞତା ଦେଇ, ପ୍ରଚ଼ାର ଦ୍ୱାରା ନୁହେଁ। ସେହି କାରଣରୁ, ଏବଂ ଯେହେତୁ ସମଗ୍ର ଚାଷୀ କୁଳ କେବଳ ସମାନ ଜମି ସତ୍ତ୍ୱାଧିକାର ଭିତ୍ତିରେ ହିଁ ବିପ୍ଳବକୁ ବୁଝି ପାରିବେ,

ଆମେ ଆମର ଅକ୍ଟୋବର ୨୬, ୧୯୧୭ ର ଆଦେଶନାମାରେ ଖୋଲାଖୋଲି ଭାବେ ଘୋଷଣା କରିଥିଲୁ ଯେ ଜମି ଉପରେ ଚାଷୀଙ୍କ ଅଧିକାର ହିଁ ଆମର ଆରମ୍ଭ ବିନ୍ଦୁ ହେବ।

ଆମେ ସ୍ପଷ୍ଟ ରୂପେ କହିଥିଲୁ ଯେ ଏହା ଆମ ମତ ସହ ମେଳ ଖାଉନି, ଏହା ସାମ୍ୟବାଦ ନୁହେଁ, କିନ୍ତୁ ଯାହା ଆମ କାର୍ଯ୍ୟକ୍ରମ ସହ ମେଳ ଖାଉଛି, ଅଥଚ୍ ଚାଷୀମାନଙ୍କ ମତାମତ ସହ ମେଳ ଖାଉନି, ତାକୁ ଆମେ ସେମାନଙ୍କ ଉପରେ ଚାପି ଦେବା ପାଇଁ ଚାହିଁ ନଥିଲୁ। କହିଥିଲୁ, ଶ୍ରମିକବନ୍ଧୁଙ୍କ ସଙ୍ଗେ ଚାଲିଲା ଭଳି ଆମେ ସେମାନଙ୍କ ସଙ୍ଗେ ଚାଲିଛୁ ଏଇ ଦୃଢ଼ ବିଶ୍ୱାସ ସହିତ ଯେ ଆମେମାନେ ନିଜେ ଯେଉଁ ସିଦ୍ଧାନ୍ତରେ ପହଞ୍ଚିଛୁ ବିପ୍ଳବର ବିକାଶ ସେମାନଙ୍କୁ ସେଇ ସିଦ୍ଧାନ୍ତ ଆଡ଼କୁ ବାଟ କଢ଼େଇବ। ଏହି ନୀତିର ପରିଣତି ହେଉଛି ଚାଷୀ ଆନ୍ଦୋଳନ। ଜମିର ସମାଜୀକରଣରୁ ଭୂସଂସ୍କାର ଆରମ୍ଭ ହେଲା, ଯାହା ପାଇଁ ଆମେ ଭୋଟ ଦେଇଥିଲୁ, କାର୍ଯ୍ୟକାରୀ ବି କରିଥିଲୁ, ଅଥଚ୍ ଖୁଲ୍ଲମ୍‌ଖୁଲା ଘୋଷଣା କରିଥିଲୁ ଯେ ଏହା ଆମ ମତ ସହ ଖାପ ଖାଉନି। ଆମେ ଜାଣିଥିଲୁ ଯେ ସମାନ ଜମି ସତ୍ତ୍ୱାଧିକାର ରୂପକ ଧାରଣାଟି ପ୍ରତି ବିପୁଳ ଜନ ସମର୍ଥନ ଥିଲା, ଏବଂ କୌଣସି କଥା ସେମାନଙ୍କ ଉପରେ ଚାପି ଦେବା ପାଇଁ ଆମର ଇଚ୍ଛା ନଥିଲା। ଚାଷୀମାନେ ନିଜେ ସେଇ ଧାରଣାଟିକୁ ପରିତ୍ୟାଗ କରି ଆଗକୁ ବଢ଼ିବା ପର୍ଯ୍ୟନ୍ତ ଅପେକ୍ଷା କରିବା ପାଇଁ ପ୍ରସ୍ତୁତ ଥିଲୁ। ତେଣୁ ଆମେ ଅପେକ୍ଷା କଲୁ ଓ ଆମ ଶକ୍ତିକୁ ପ୍ରସ୍ତୁତ କରିବା ପାଇଁ ସକ୍ଷମ ହୋଇଛୁ।

ସେତେବେଳେ ଯେଉଁ ଆଇନ ଆମେ ପାଶ୍ କରିଥିଲୁ ତାହାର ଭିତ୍ତି ଥିଲା ସାଧାରଣ ଗଣତାନ୍ତ୍ରିକ ନୀତି, ଭିତ୍ତି ଥିଲା ସେଇ ନୀତି ଯାହା, ଜମିଦାରମାନଙ୍କ ପ୍ରତି ଘୃଣା ଯୋଗୁଁ, ଧନୀ କୁଲାକ ଚାଷୀ ଓ ଗରିବ ଚାଷୀଙ୍କୁ ଏକାକାର କରିଥାଏ। ତାହା ସମାନତାର ସାଧାରଣ ଧାରଣା ଉପରେ ପ୍ରତିଷ୍ଠିତ ଥିଲା, ଯାହା ଧତରା ରଜାରାଜୁଡ଼ା ବ୍ୟବସ୍ଥାକୁ ଶରବ୍ୟ କରିବା ଦୃଷ୍ଟିରୁ ନିଃସନ୍ଦେହରେ ଏକ ବୈପ୍ଳବିକ ଧାରଣା ଥିଲା। କିନ୍ତୁ ଏହି ନିୟମରୁ ଆମକୁ ଚାଷୀମାନଙ୍କ ମଧ୍ୟରେ ଥିବା ବିଭିନ୍ନତା ଆଡ଼କୁ ଗତି କରିବାର ଥିଲା। ଜମି ସମାଜୀକରଣ ନିୟମକୁ ସମସ୍ତେ ଗ୍ରହଣ କରିଥିଲେ; ଏହା ଆମ ଦ୍ୱାରା ଓ ଯେଉଁମାନେ ବଲଶେଭିକ ନୀତିକୁ ଗ୍ରହଣ କରୁ ନଥିଲେ ସେମାନଙ୍କ ଦ୍ୱାରା ସର୍ବସମ୍ମତିରେ ଗୃହୀତ ହୋଇଥିଲା। ଜମି ଉପରେ ଅଧିକାର କାହାର ରହିବା ଉଚିତ ତାର ପ୍ରାୟ ଶେଷ ନିଷ୍ପତ୍ତି କରିବା ଅଧିକାର ଆମେ ଚାଷୀ କମ୍ୟୁନ୍‌ଗୁଡ଼ିକୁ ଦେଇଥିଲୁ। ସମାଜବାଦୀ ରୀତିରେ କୃଷିର ବିକାଶ ପାଇଁ ଆମେ ବାଟ ଖୋଲା ରଖିଥିଲୁ, ଅଥଚ ସେତେବେଳେ, ଅକ୍ଟୋବର ୧୯୧୭ରେ, ଆମେ ଭଲ ରୂପେ ଜାଣିଥିଲୁ ଯେ କୃଷି ସେଥିପାଇଁ ଆହୁରି ପ୍ରସ୍ତୁତ ନଥିଲା। ଆମର ପ୍ରସ୍ତୁତି କାର୍ଯ୍ୟ ରାସ୍ତା ସଫା କରିଥିଲା ଆମେ ବର୍ତ୍ତମାନ ନେଇଥିବା ବିଶାଳ, ଯୁଗାନ୍ତକାରୀ ପଦକ୍ଷେପ ପାଇଁ, ଯାହା ଅନ୍ୟ କୌଣସି ଦେଶ ନେଇ ନାହିଁ, ଏପରିକି ସମସ୍ତଙ୍କଠୁଁ ବଳି ଗଣତାନ୍ତ୍ରିକ ପ୍ରଜାତନ୍ତ୍ର ବି ନୁହେଁ। ଏଇ ଗ୍ରୀଷ୍ମଋତୁରେ ସମସ୍ତ ଚାଷୀ ଏ ପଦକ୍ଷେପ ନେଇଥିଲେ, ଋଷିଆର ଦୂରଦୂରାନ୍ତର ଗାଁଗୁଡ଼ିକ ବି ଏଥିରୁ ବାଦ ପଡ଼ି ନଥିଲା। ଯେତେବେଳେ ଖାଦ୍ୟ ସମସ୍ୟା ଦେଖା ଦେଲା ଓ ଦୁର୍ଭିକ୍ଷର ଧମକ ମିଳିଲା, ଯେତେବେଳେ ଅତୀତର ଐତିହ୍ୟ ଓ ଚାରି ବର୍ଷର ଘୃଣ୍ୟ ଯୁଦ୍ଧର କୁପ୍ରଭାବ

ଅନୁଭୂତ ହେଲା, ଯେତେବେଳେ ପ୍ରତି–ବିପ୍ଳବ ଓ ଗୃହ ଯୁଦ୍ଧ ଆମଠୁଁ ଆମର ଧନଧାନ୍ୟଭରା ଅଞ୍ଚଳ ଛଡ଼େଇ ନେଲା, ଯେତେବେଳେ ଏହି ସବୁକଥା ଚରମ ସୀମାରେ ପହଞ୍ଚିଲା ଓ ସହରଗୁଡ଼ିକରେ ଦୁର୍ଭିକ୍ଷ ଭୟଙ୍କର ରୂପ ନେଲା, ଆମ ସରକାରର ଏକମାତ୍ର ଓ ଅତ୍ୟନ୍ତ ବିଶ୍ୱସ୍ତ ତଥା ଦୃଢ଼ ସୁରକ୍ଷାଦାତା, ସହର ଓ ଶିଳ୍ପାଞ୍ଚଳଗୁଡ଼ିକର ଆଗୁଆ ଶ୍ରମିକମାନେ ସମୂହରେ ଗ୍ରାମାଞ୍ଚଳକୁ ଯାଇଥିଲେ। ସେମାନେ ସେଠାକୁ ଶ୍ରମିକ ଓ କୃଷକମାନଙ୍କ ମଧ୍ୟରେ ଏକ ସଶସ୍ତ୍ର ସଂଘର୍ଷ ପାଇଁ ଉସୁକେଇବା ଉଦ୍ଦେଶ୍ୟରେ ଯାଇଥିଲେ ବୋଲି କହିବାଟା କୁତ୍ସାରଟନା। ଘଟଣାବଳୀ ସେଇ କୁତ୍ସାରଟନାକୁ ପଦାରେ ପକେଇ ଦେଉଛି। ଏପରି ଏକ ସମୟରେ ଯେତେବେଳେ ଲୋକେ ଭୋକରେ ସଢ଼ୁଥିଲେ, ଖାଦ୍ୟଶସ୍ୟରେ ମୁନାଫାଖୋରୀ କରି ଧନଶାଳୀ ହେଉଥିବା ଗ୍ରାମାଞ୍ଚଳର ଶୋଷକ, କୁଲାକ୍‌ମାନଙ୍କୁ ଜବତ୍ କରିବା ପାଇଁ ସେମାନେ ସେଠାକୁ ଯାଇଥିଲେ। ସେମାନେ ଗରିବ ଚାଷୀମାନଙ୍କୁ, ଅର୍ଥାତ୍ ଗ୍ରାମାଞ୍ଚଳର ଜନସଂଖ୍ୟାର ବହୁଳାଂଶଙ୍କୁ ସାହାଯ୍ୟ କରିବା ପାଇଁ ଯାଇଥିଲେ। ଜୁଲାଇ ମାସର ସଙ୍କଟ କାଳ, ଯେତେବେଳେ କୁଲାକ୍‌ମାନଙ୍କର ବିଦ୍ରୋହ ଋଷିଆ ସାରା ବ୍ୟାପି ଯାଇଥିଲା, ସ୍ପଷ୍ଟରୂପେ ପ୍ରମାଣିତ କରିଥିଲା ଯେ ସେମାନେ ଯିବାର ଉଦ୍ଦେଶ୍ୟ ପାଣିରେ ପଡ଼ି ନଥିଲା। ସେମାନେ ମିତ୍ରତାର ହାତ ବଢ଼େଇଥିଲେ ଏବଂ ସେମାନଙ୍କର ପ୍ରସ୍ତୁତି କାର୍ଯ୍ୟ ଚାଷୀମାନଙ୍କର ଉଦ୍ୟମ ସହ ମିଶି ଯାଇଥିଲା। ଶ୍ରମଜୀବୀ ଓ ଶୋଷିତ ଗ୍ରାମାଞ୍ଚଳ ଲୋକେ ସହରୀ ସର୍ବହରାଙ୍କ ସହ ଯୋଡ଼ି ହୋଇ ସର୍ବତ୍ର ଅସ୍ତ୍ରଧାରଣ କରି ଜୁଲାଇ ସଙ୍କଟର ସମାଧାନ କରିଥିଲେ। ଆଜି କମ୍ରେଡ୍ ଜୀନୋଭିଏଭ୍ ଟେଲିଫୋନରେ କହିଲେ ଯେ ପେଟ୍ରୋଗ୍ରାଦ୍‌ରେ ଗରିବ ଚାଷୀ କମିଟିଗୁଡ଼ିକର ଆଞ୍ଚଳିକ ମହାସଭାରେ ୧୮,୦୦୦ ଲୋକ

ଯୋଗ ଦେଉଛନ୍ତି ଏବଂ ସେଠାରେ ଅସାଧାରଣ ଆଗ୍ରହ ଓ ସ୍ଫୂର୍ତ୍ତି ଦେଖା ଦେଇଛି।

ଯେମିତି ଋଷିଆ ସାରା ବ୍ୟାପି ଯାଉଥିବା ଘଟଣାମାନ ଅଧିକରୁ ଅଧିକ ସ୍ପଷ୍ଟ ହେଲା, ଗ୍ରାମୀଣ ଗରିବ ଲୋକେ ଯେତେବେଳେ ଲଢ଼େଇରେ ପ୍ରବେଶ କଲେ ନିଜ ଅଭିଜ୍ଞତାରୁ ସେମାନେ କୁଲାକମାନଙ୍କ ସହ ସଙ୍ଘର୍ଷର ମାନେ କଅଣ ଅନୁଭବ କଲେ। ଏହା ବି ଅନୁଭବ କଲେ ଯେ ସହରଗୁଡ଼ିକୁ ଖାଦ୍ୟ ଯୋଗାଣ ଚାଲୁ ରଖିବାକୁ ହେବ ଓ ପଣ୍ୟଦ୍ରବ୍ୟର ବିନିମୟ, ଯାହା ବିନା ଗ୍ରମାଞ୍ଚଳ ବଞ୍ଚି ପାରିବନି, ପୁନଃପ୍ରତିଷ୍ଠା କରିବାକୁ ହେବ, ସେମାନଙ୍କୁ ଗ୍ରାମୀଣ ବୁର୍ଜୁଆ ଓ କୁଲାକ୍‌ମାନଙ୍କର ସଙ୍ଗ ଛାଡ଼ିବାକୁ ହେବ। ସେମାନଙ୍କୁ ସ୍ୱତନ୍ତ୍ର ଭାବେ ସଂଗଠିତ ହେବାକୁ ହେବ। ଗ୍ରାମାଞ୍ଚଳରେ ସମାଜବାଦୀ ବିପ୍ଲବ ଭଳି ପ୍ରଥମ ଓ ଗୁରୁତ୍ୱପୂର୍ଣ୍ଣ ପଦକ୍ଷେପ ଆମେ ବର୍ତ୍ତମାନ ନେଇଛୁ। ସେଇ ପଦକ୍ଷେପ ଆମେ ଅକ୍ଟୋବରରେ ନେଇପାରି ନଥାନ୍ତୁ। କେତେବେଳେ ଲୋକଙ୍କ ପାଖକୁ ଯିବୁ ତାର ଏକ କଳନା କରିଥିଲୁ। ବର୍ତ୍ତମାନ ଆମେ ଏକ ସ୍ଥିତିରେ ପହଞ୍ଚି ସାରିଛେ, ଯେଉଁଠି ଗ୍ରାମାଞ୍ଚଳରେ ସମାଜବାଦୀ ବିପ୍ଲବ ଆରମ୍ଭ ହୋଇ ସାରିଛି, ଯେଉଁଠି ପ୍ରତି ଗାଁରେ, ଏପରି କି ଦୂରଦୂରାନ୍ତର ଚାଷୀ ବୁଝି ପାରୁଛି ଯେ ଯଦି ତାର ଧନୀ ପଡ଼ୋଶୀ, କୁଲାକ୍, ଖାଦ୍ୟଶସ୍ୟରେ ମୁନାଫାଖୋରୀ କରୁଛି, ତେବେ ପ୍ରତି କଥାକୁ ସେ ତାର ସେଇ ପୁରୁଣା, ଜଙ୍ଗଲୀ ମାନସିକତାରେ ଦେଖୁଛି।

ତେଣୁ ଗ୍ରାମାଞ୍ଚଳର ଗରିବ ଲୋକେ, ସେମାନଙ୍କୁ ନେତୃତ୍ୱ ଦେଉଥିବା ସହରର ଶ୍ରମିକମାନଙ୍କ ସହ ଏକ ହୋଇ, ବାସ୍ତବ ସମାଜବାଦ

ନିର୍ମାଣ ପାଇଁ ବର୍ତ୍ତମାନ ହିଁ ଏକ ଦୃଢ଼ ଓ ସ୍ଥିର ଭିତ୍ତି ଯୋଗେଇଛନ୍ତି। ବର୍ତ୍ତମାନ ହିଁ ଗ୍ରାମାଞ୍ଚଳରେ ସମାଜବାଦ ନିର୍ମାଣ ଆରମ୍ଭ ହେବ। କେବଳ ବର୍ତ୍ତମାନ ହିଁ ସୋଭିୟେତ୍ ଓ କୃଷିକ୍ଷେତ୍ରଗୁଡ଼ିକୁ ଗଠନ କରା ଯାଉଛି। ଏପରିକି ନିହାତି ସରଳ, ପ୍ରାଥମିକ ମାନବିକ ସଂସ୍କୃତି ବି ପୁରୁଣା, ପ୍ରତିକ୍ରିୟାଶିଳ, ଅଜ୍ଞ ଜୀବନଧାରା ଉପରେ ପ୍ରତିଷ୍ଠିତ ହୋଇ ପାରିବନି ଏଇ ଅନୁଭବ ନେଇ ସେଗୁଡ଼ିକ ବଡ଼ ଧରଣର ସମାଜୀକୃତ ଚାଷ ପାଇଁ, ଜ୍ଞାନ, ବିଜ୍ଞାନ ତଥା ବୈଷୟିକ ଜ୍ଞାନକୌଶଳର ସମ୍ପୂର୍ଣ୍ଣ ବ୍ୟବହାର ପାଇଁ ବିଧିବଦ୍ଧ ଭାବେ କାମ କରୁଛନ୍ତି। ଶିଳ୍ପକ୍ଷେତ୍ର ଅପେକ୍ଷା କାମ ଏଠାରେ ଅଧିକ କଷ୍ଟକର, ଏବଂ ଆମର ସ୍ଥାନୀୟ କମିଟି ସୋଭିୟେତ୍‌ଗୁଡ଼ିକ ଅଧିକ ଭୁଲ କରୁଛନ୍ତି। କିନ୍ତୁ ସେମାନଙ୍କର ଭୁଲରୁ ସେମାନେ ଶିକ୍ଷା ପାଉଛନ୍ତି। ଆମେ ଭୁଲକୁ ଡରୁନୁ, ଯେତେବେଳେ ସେଇ ଭୁଲ ସମାଜବାଦୀ ନିର୍ମାଣ ପ୍ରତି ହିତାହିତ ଜ୍ଞାନ ଦୃଷ୍ଟିରୁ ଦେଖୁଥିବା ସାଧାରଣ ଲୋକେ କରିଥାନ୍ତି, କାରଣ ଆମେ କେବଳ ଆମ ନିଜ ଲୋକଙ୍କ ଅନୁଭୁତି ଓ ଉଦ୍ୟମକୁ ବିଶ୍ୱାସ କରୁ।

ଏତେ କମ୍ ସମୟରେ ଆମକୁ ଗ୍ରାମାଞ୍ଚଳର ସମାଜବାଦକୁ ବାଟ କଢ଼େଇଥିବା ଏହି ଭୟାନକ ଆଲୋଡ଼ନ ବର୍ତ୍ତମାନ ଦର୍ଶାଏ ଯେ ଆମ ଲଢ଼େଇ ବିଜୟମଣ୍ଡିତ ହୋଇଛି। ତାହାର ଚମକପ୍ରଦ ପ୍ରମାଣ ହେଉଛି ଲାଲ ସେନା। ଆପଣମାନେ ଜାଣନ୍ତି ସାମ୍ରାଜ୍ୟବାଦୀ ବିଶ୍ୱ ଯୁଦ୍ଧ ବେଳେ ଆମେମାନେ କେଉଁ ସ୍ଥିତିରେ ଥିଲେ। ସେତେବେଳେ ଋଷିଆର ଅବସ୍ଥା ଏପରି ଥିଲା ଯେ ସାଧାରଣ ମଣିଷ ପକ୍ଷରେ ଦୈନନ୍ଦିନ ଜୀବନ ନିର୍ବାହ କରିବା ଅସହ୍ୟ ହୋଇଥିଲା। ଆମେ ଅତ୍ୟନ୍ତ ଅସହାୟ ଅବସ୍ଥାରେ ଥିଲେ।

ତଥାପି ଲୋକଙ୍କୁ ଖୁଲ୍ଲମ୍‌ଖୁଲା ନିରାଟ ସତ କଥା କହିଥିଲୁ। ଆମେ ଗୁପ୍ତ ସାମ୍ରାଜ୍ୟବାଦୀ ଚୁକ୍ତିଗୁଡ଼ିକୁ ଲୋକଲୋଚନକୁ ଆଣିଲୁ। ପ୍ରତାରଣାର ଏକ ଭାରି ଅସ୍ତ୍ର ରୂପେ କାର୍ଯ୍ୟ କରୁଥିବା ନୀତିର ସେଗୁଡ଼ିକ ଥିଲା ଫଳ। ବୁର୍ଜୁଆ ସାମ୍ରାଜ୍ୟବାଦୀ ଗଣତାନ୍ତ୍ରିକ ପ୍ରଜାତନ୍ତ୍ରଗୁଡ଼ିକ ମଧ୍ୟରେ ନିହାତି ଆଗୁଆ ଆମେରିକାରେ ସେହି ନୀତି ଲୋକଙ୍କୁ ଅନ୍ୟ ବେଳ ଅପେକ୍ଷା ଆଜି ବେଶି ପ୍ରତାରିତ କରୁଛି ଓ ସେମାନଙ୍କର ନାକ ଦଉଡ଼ି ଧରି ଆଗକୁ ନେଉଛି। ଯେତେବେଳେ ଯୁଦ୍ଧର ସାମ୍ରାଜ୍ୟବାଦୀ ଚରିତ୍ର ସମସ୍ତଙ୍କ ପାଖେ ସ୍ପଷ୍ଟ ହୋଇଗଲା, ଋଷୀୟ ସୋଭିୟେତ୍ ପ୍ରଜାତନ୍ତ୍ର ଥିଲା ଏକମାତ୍ର ଦେଶ ଯିଏ ବୁର୍ଜୁଆ ଶ୍ରେଣୀର ଗୁପ୍ତ ବୈଦେଶିକ ନୀତିକୁ ଚୁର୍‌ମାର୍ କରି ଦେଇଥିଲା। ଗୁପ୍ତ ଚୁକ୍ତିଗୁଡ଼ିକୁ ପଦାରେ ପକେଇଲୁ ଓ କମ୍ରେଡ ଟ୍ରଟସ୍କୀଙ୍କ ଜରିଆରେ ବିଶ୍ୱର ସମସ୍ତ ଦେଶ ଉଦ୍ଦେଶ୍ୟରେ ଘୋଷଣା କଲୁ: କୌଣସି ରାଜ୍ୟକୁ ଅଧିକାର ଭୁକ୍ତ ନକରି ଓ ବିନା କ୍ଷତିପୂରଣରେ ଗଣତାନ୍ତ୍ରିକ ଉପାୟରେ ଏହି ଯୁଦ୍ଧର ଅନ୍ତ କରିବା ନିବେଦନ କରୁ, ଏବଂ ଖୁଲ୍ଲମ୍‌ଖୁଲା ଓ ଗର୍ବର ସହ ଏକ ସତ୍ୟ, ଅପ୍ରିୟ ତଥାପି ସତ୍ୟ, ଘୋଷଣା କରୁ ଯେ ବୁର୍ଜୁଆ ସରକାରଙ୍କ ବିରୁଦ୍ଧରେ ବିପ୍ଳବ ହିଁ ଏହି ଯୁଦ୍ଧର ଅନ୍ତ କରି ପାରିବ। କିନ୍ତୁ ଆମେ ଏକେଲା ଥିଲୁ। ତେଣୁ ବ୍ରେଷ୍ଟ–ଲିଟୋଭସ୍କ ଚୁକ୍ତି ଦ୍ୱାରା ଆମ ଉପରେ ଲଦି ଦିଆଯାଇ ଥିବା ଭୟଙ୍କର ଯନ୍ତ୍ରଣାଦାୟକ ଶାନ୍ତି ପାଇଁ ଆମକୁ ମୂଲ୍ୟ ଦେବାକୁ ପଡ଼ିଥିଲା, ଯାହା ଫଳରେ ଆମର ବହୁ ସମର୍ଥକ ଅସନ୍ତୁଷ୍ଟ ହୋଇଥିଲେ ଓ ସେମାନଙ୍କ ମନରେ ହତାଶାଭାବ ଜାତ ହୋଇଥିଲା। ତାହା ଘଟିଲା କାରଣ ଆମେ ଏକେଲା ଥିଲୁ। କିନ୍ତୁ ଆମେ ଆମର କର୍ତ୍ତବ୍ୟ କରିଥିଲୁ ଏବଂ ପ୍ରତ୍ୟେକଙ୍କ ଦେଖିବା ପାଇଁ ଆମେ ଯୁଦ୍ଧର ଲକ୍ଷ୍ୟଗୁଡ଼ିକୁ ଦର୍ଶେଇ ଥିଲୁ! ଜର୍ମାନ ସାମ୍ରାଜ୍ୟବାଦର

ପ୍ରଚଣ୍ଡ ଆକ୍ରମଣ ଆମକୁ ପରାସ୍ତ କରିବାରେ ସକ୍ଷମ ହୋଇଥିଲା, କାରଣ ଆମ ଶ୍ରମିକ ଓ କୃଷକମାନଙ୍କୁ ଠିକ୍ ଭାବେ ସଂଗଠିତ ହେବା ପାଇଁ କିଛି ସମୟ ଲାଗିଥିଲା। ସେତେବେଳେ ଆମ ପାଖେ ସେନା ନଥିଲା, ଯାହା ଥିଲା ତାହା ହେଲା ସେଇ ପୁରୁଣା, ବିଶୃଙ୍ଖଳିତ, ସାମ୍ରାଜ୍ୟବାଦୀ ସେନା, ଯାହାର ସୈନ୍ୟମାନେ ଯୁଦ୍ଧର ଲକ୍ଷ୍ୟଗୁଡ଼ିକୁ ନା ସମର୍ଥନ କରୁଥିଲେ ନା ସେଗୁଡ଼ିକ ପ୍ରତି ସେମାନଙ୍କର ସହାନଭୁତି ଥିଲା, ତଥାପି ସେମାନଙ୍କୁ ଯୁଦ୍ଧରେ ଲଢ଼େଇ କରିବା ପାଇଁ ବାଧ କରାଯାଇଥିଲା। ତେଣୁ ଆମକୁ ଏକ ଅତି ଦୁଃଖଦ ସମୟ ଦେଇ ଗତି କରିବାକୁ ପଡ଼ିଥିଲା। ଏହା ଏପରି ଏକ ସମୟ ଥିଲା ଯେତେବେଳେ ଲୋକେ ଏହି ଭୟଙ୍କର ସାମ୍ରାଜ୍ୟବାଦୀ ଯୁଦ୍ଧରୁ ଏକ ବିରତି ଆବଶ୍ୟକ କରୁଥିଲେ, କିନ୍ତୁ ଏକ ନୂଆ ଯୁଦ୍ଧର ଆରମ୍ଭ ଅନୁଭବ କରିବା ପାଇଁ ବାଧ ହୋଇଥିଲେ। ଆମର ସମାଜବାଦୀ ବିପ୍ଳବକୁ ରକ୍ଷା କରିବା ପାଇଁ ଆମେ ଯେଉଁ ଯୁଦ୍ଧ କରିବୁ ସେଇ ଯୁଦ୍ଧକୁ ଆମ ଯୁଦ୍ଧ ବୋଲି କହିବା ଅଧିକାର ଆମର ରହିଛି। କୋଟି କୋଟି ଲୋକ ସେମାନଙ୍କର ଅଭିଜ୍ଞତାରୁ ହିଁ ଏହି ମୂଲ୍ୟାୟନ ଶିଖିଥିଲେ। ଏଥିପାଇଁ ମାସ ମାସ ବିତିଛି। ଏଇ ଅନୁଭବକୁ ଏକ ସଫଳ ଅନୁଭବରେ ପରିଣତ କରିବା ପାଇଁ ଏକ ଦୀର୍ଘ ଓ ଦୃଢ଼ ଲଢ଼େଇ କରିବାକୁ ପଡ଼ିଥିଲା। ଏହି ଗ୍ରୀଷ୍ମଋତୁରେ, ଅବଶ୍ୟ, ପ୍ରତ୍ୟେକେ ଦେଖିଲେ ଯେ ପରିଶେଷରେ ସଫଳତା ମିଳିଛି, ଏକ ବଡ଼ ଧରଣର ସଫଳତା ମିଳିଛି। ପ୍ରତ୍ୟେକେ ହୃଦ୍‌ବୋଧ କଲେ ଯେ ସୋଭିୟେତ୍ ପ୍ରଜାତନ୍ତ୍ର ପାଇଁ ସେନା ଲଢ଼େଇ କରିବାକୁ ହେଲେ — ତାହା ଲୋକଙ୍କ ଭିତରୁ ହୋଇଥିବ, ଆତ୍ମବଳୀ ଦେଇ ପାରୁଥିବ, ଚାରି ବର୍ଷର ନିଷ୍ଠୁର ହତ୍ୟା ପରେ ପୁଣି ଯୁଦ୍ଧକୁ ଯିବାକୁ ପ୍ରସ୍ତୁତ ଥିବ — ଆମ ଦେଶ ଯୁଦ୍ଧକୁ ଯାଉଥିବା ଲୋକଙ୍କ ମନର

କ୍ଳାନ୍ତି ଓ ହତାଶା ସ୍ଥାନରେ ଏଇ ଉପଲବ୍ଧି ଥୋଇବାକୁ ହେବ ଯେ ସେମାନେ ମୃତ୍ୟୁବରଣ କରିବାକୁ ଯାଉଛନ୍ତି ନିଜ ହିତରେ, ନିଜ ପାଇଁ — ଶ୍ରମିକ ଓ କୃଷକମାନଙ୍କର ସୋଭିୟେତ୍‌ଗୁଡ଼ିକ ପାଇଁ, ସମାଜବାଦୀ ପ୍ରଜାତନ୍ତ୍ର ପାଇଁ। ଏଇ କଥା କରିବାରେ ଆମେ ସଫଳ ହୋଇଛେ।

ଗ୍ରୀଷ୍ମ ଋତୁରେ ଚେକ୍‌ମାନଙ୍କ ଉପରେ ଆମେ ଯେଉଁସବୁ ବିଜୟ ହାସଲ କଲେ, ଏବଂ ବଡ଼ ବଡ଼ ବିଜୟର ଯେଉଁ ଖବରସବୁ ବର୍ତ୍ତମାନ ଆସୁଛି ଦର୍ଶାନ୍ତି ଯେ ପରିବର୍ତ୍ତନର ଏକ ନିର୍ଣ୍ଣାୟକ ମୋଡ଼ ଆସି ସାରିଛି, ଏବଂ ସବୁଠୁଁ କଠିନ କାମ — ଚାରି ବର୍ଷର ଭୟଙ୍କର ଯୁଦ୍ଧ ପରେ ରାଜନୈତିକ ସଚେ୍ତନତା ସହ ସମାଜବାଦୀ ଧାରାରେ ଲୋକଙ୍କୁ ସଂଗଠିତ କରିବା କାମ — ସଫଳ ହୋଇଛି। ରାଜନୈତିକ ସଚେ୍ତନତା ଲୋକଙ୍କ ମନର ଗଭୀରତମ ପ୍ରଦେଶକୁ ଛୁଇଁଛି। କୋଟି କୋଟି ଲୋକ ଅନୁଭବ କଲେଣି ଯେ ସେମାନେ ଏକ କଠିନ କାର୍ଯ୍ୟର ସାମନା କରିଛନ୍ତି। ଏବଂ ତାହା ଆମ ମନରେ ଦୃଢ଼ ବିଶ୍ୱାସ ଜନ୍ମାଏ ଯେ — ବିଶ୍ୱର ଆମଠାରୁ ବଳୀୟାନ୍ ସାମ୍ରାଜ୍ୟବାଦୀ ଶକ୍ତିଗୁଡ଼ିକ ସେସାନଙ୍କର ଶକ୍ତିକୁ ଆମ ବିରୁଦ୍ଧରେ ଠୁଳ କରୁଥିଲେ ବି, ସୋଭିୟେତ୍ ସରକାର ବିପଦରେ ଥିବା ଅନୁଭବ କରୁଥିବା ଓ ତାକୁ ତୋଟି ଚିପି ମାରିବା ପାଇଁ ଚାହୁଁଥିବା ସାମ୍ରାଜ୍ୟବାଦୀ ଶକ୍ତିଙ୍କ ସୈନ୍ୟମାନଙ୍କ ଘେର ଭିତରେ ଆମେ ଥିଲେ ବି, ସେମାନେ ଆମଠାରୁ ବଳୀୟାନ୍ ବୋଲି ଖୋଦ୍ ଆମେ ସତ କଥା କହୁଥିଲେ ବି — ଆମେ ହତାଶ ହେବାନି।

ଆମେ କହୁଛୁ ଆମର ଅଭିବୃଦ୍ଧି ହେଉଛି, ସୋଭିୟେତ୍ ପ୍ରଜାତନ୍ତ୍ରର ଅଭିବୃଦ୍ଧି ଘଟୁଛି। ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ ସୈନ୍ୟମାନେ ଆମକୁ ଘେରଉ କରୁଥିବା ବେଗ ଅପେକ୍ଷା ସର୍ବହରା ବିପ୍ଳବର ଯଥାର୍ଥତାର ଅଭିବୃଦ୍ଧି ବେଗ ଅଧିକ। ଆମର ସମ୍ପୂର୍ଣ୍ଣ ଆଶା ଓ ଆତ୍ମବିଶ୍ୱାସ ଯେ ଆମେ ଋଷୀୟ ସମାଜବାଦୀ ବିପ୍ଳବ ସଙ୍ଗେ ସଙ୍ଗେ ବିଶ୍ୱ ସମାଜବାଦୀ ବିପ୍ଳବର ସ୍ୱାର୍ଥରେ ଲଢ଼େଇ କରୁଛୁ। ଆମର ବିଜୟର ଆଶା ତୀବ୍ରତର ହେଉଛି, କାରଣ ଶ୍ରମିକମାନଙ୍କ ମଧ୍ୟରେ ରାଜନୈତିକ ସଚେତନତା ଅଧିକରୁ ଅଧିକ ବୃଦ୍ଧି ପାଉଛି। ସୋଭିୟେତ୍ ସଂଗଠନର ସ୍ଥିତି ଗତ ଅକ୍ଟୋବରରେ କଅଣ ଥିଲା? କେବଳ ପ୍ରଥମ ପଦକ୍ଷେପଗୁଡ଼ିକ ନିଆ ଯାଉଥିଲା। ଆମେ ତାକୁ ତ୍ରୁଟିହୀନ କରିପାରି ନଥିଲୁ କି ତା ପାଇଁ ଯଥାର୍ଥ ଭିତ୍ତି ଯୋଗେଇ ପାରି ନଥିଲୁ। କିନ୍ତୁ ବର୍ତ୍ତମାନ ଆମ ପାଖେ ସୋଭିୟେତ୍ ସମ୍ବିଧାନ ରହିଛି। ଜୁଲାଇରେ ଅନୁମୋଦିତ ହୋଇଥିବା ସୋଭିୟେତ୍ ସମ୍ବିଧାନ, ଆମେ ଜାଣିବା ପ୍ରକାରେ, କୌଣସି କମିଶନର ଉଦ୍ଭାବନ ନୁହେଁ, ଆଇନଜ୍ଞମାନେ ବି ୟାକୁ ସୃଷ୍ଟି କରି ନାହାନ୍ତି, ଅନ୍ୟ ସମ୍ବିଧାନଗୁଡ଼ିକରୁ ନକଲ ବି କରା ହେଇନି। ଆମ ସମ୍ବିଧାନ ଭଳିଆ ଏକ ସମ୍ବିଧାନ ବିଶ୍ୱ ଆଗରୁ କେବେ ଦେଖିନି। ଘରେ ଓ ବାହାରେ ଶୋଷକମାନଙ୍କ ବିରୁଦ୍ଧରେ ସଂଗଠନ ଓ ସଂଗ୍ରାମରେ ଶ୍ରମିକମାନେ ପାଇଥିବା ଅନୁଭୂତିର ଏଇ ସମ୍ବିଧାନ ହେଉଛି ବାସ୍ତବ ରୂପ। ଲଢ଼େଇ ଅଭିଜ୍ଞତାର ଏକ ଭଣ୍ଡାର ଆମ ପାଖେ ରହିଛି। ଏବଂ ସଂଗଠିତ ଶ୍ରମିକମାନେ ବେସାମରିକ (ସିଭିଲ୍) କର୍ମଚାରୀବିହୀନ, ସ୍ଥାୟୀ ସୈନ୍ୟବାହିନୀ ନଥାଇ, (ବୁର୍ଜୁଆ ଶ୍ରେଣୀ ପାଇଁ ପ୍ରଚଳିତ ଥିବା ଭଳି) ସୁଖସୁବିଧା ରହିତ ଏକ ସୋଭିୟେତ୍ ସରକାର ସୃଷ୍ଟି କରିବା, ଓ ଶିଳ୍ପକ୍ଷେତ୍ରରେ ଏକ ନୂଆ ପ୍ରଣାଳୀ

ପାଇଁ ଭିତ୍ତି ସୃଷ୍ଟି କରିବା କଥାକୁ ଅଭିଜ୍ଞତାର ଏହି ଭଣ୍ଡାର ପ୍ରବଳ ସମର୍ଥନ ଯୋଗାଏ। ଆମେ ବର୍ତ୍ତମାନ କାର୍ଯ୍ୟ ଆରମ୍ଭ କରୁଛୁ ଏବଂ ସୋଭିଯେତ୍ ସମ୍ବିଧାନକୁ କାର୍ଯ୍ୟକାରୀ କରିବା ପାଇଁ ଯେଉଁମାନଙ୍କର ଆବଶ୍ୟକତା ରହିଛି, ସେମାନଙ୍କୁ ଆମ ସହ ଯୋଗ ଦେବା ପାଇଁ ଆହ୍ୱାନ କରୁଛୁ। ବର୍ତ୍ତମାନ ଆମେ ନୂଆ ସଭ୍ୟ, ଯୁବ ଚାଷୀଙ୍କୁ ପାଇଛୁ, ସେମାନଙ୍କୁ ଦାୟିତ୍ୱ ଦେବାକୁ ହେବ ଓ କାର୍ଯ୍ୟ ସମ୍ପୂର୍ଣ୍ଣ କରିବାରେ ସେମାନେ ଆମକୁ ସାହାଯ୍ୟ କରିବେ।

ଶେଷ ବିଷୟ, ଯାହା ମୁଁ ସଂକ୍ଷିପ୍ତରେ ଆଲୋଚନା କରିବା ପାଇଁ ଚାହୁଁଛି, ହେଉଛି ଆନ୍ତର୍ଜାତିକ ପରିସ୍ଥିତି। ଆମ ଆନ୍ତର୍ଜାତିକ କମ୍ରେଡମାନଙ୍କ ସହ ଆମେ କାନ୍ଧକୁ କାନ୍ଧ ମିଳେଇ ଠିଆ ହୋଇଛେ, ଆଉ ଋଷୀୟ ସର୍ବହରା ବିପ୍ଳବ ଯେ ସେମାନଙ୍କ ସହ ବିଶ୍ୱ ବିପ୍ଳବର ରୂପ ନେବ ସେମାନଙ୍କର ଏଇ ବିଶ୍ୱାସରେ ସେମାନେ କେତେ ଦୃଢ଼ତା ଓ ସ୍ଫୂର୍ତ୍ତି ଭରୁଛନ୍ତି ଆମେ ଏବେ ନିଜେ ଦେଖିଛେ।

ଯେମିତି ବିପ୍ଳବର ଆନ୍ତର୍ଜାତିକ ତାତ୍ପର୍ଯ୍ୟ ବଢ଼ିଲା, ସାରା ବିଶ୍ୱର ସାମ୍ରାଜ୍ୟବାଦୀମାନେ ଆହୁରି ଜାକିଜୁକି, ଅଧିକ କ୍ରୋଧାନ୍ଧ ହୋଇ ଆମ ବିରୁଦ୍ଧରେ ଠିଆ ହେଲେ। ୧୯୧୭ ଅକ୍ଟୋବରରେ ସେମାନେ ଆମ ପ୍ରଜାତନ୍ତ୍ରକୁ ଏକ କୌତୁହଳ ବୋଲି ବିଚାରିଲେ, ତୀକ୍ଷ୍ଣ ଦୃଷ୍ଟି ଦେବା ଆବଶ୍ୟକ ମଣିଲେନି। ଫେବୃଆରୀରେ ସେମାନେ ଏହାକୁ ସମାଜବାଦର କେବଳ ଏକ ପରୀକ୍ଷାନୀରିକ୍ଷା ଭାବିଲେ, ଗମ୍ଭୀରତା ସହ ବିଚାର କରିବା ଅନାବଶ୍ୟକ ମନେ କଲେ। କିନ୍ତୁ ପ୍ରଜାତନ୍ତ୍ରର ସେନାର ଅଭିବୃଦ୍ଧି ଘଟିଲା, ଶକ୍ତି ବଢ଼ିବାରେ ଲାଗିଲା, ଏବଂ ସମାଜବାଦୀ ଲାଲ ସେନାଟିଏ ସୃଷ୍ଟି କରିବା ଭଳି ଅତି କଠିନ

କାର୍ଯ୍ୟ ସମ୍ପନ୍ନ ହେବା ପର୍ଯ୍ୟନ୍ତ ଏହା ଚାଲୁ ରହିଲା। ଆମ ଉଦ୍ଦେଶ୍ୟର ଶକ୍ତି ବୃଦ୍ଧି ଓ ତାହାର ସଫଳତା ବହୁଗୁଣିତ ହେବାରୁ ସକଳ ଦେଶର ସାମ୍ରାଜ୍ୟବାଦୀମାନଙ୍କର ବିରୋଧ ଓ ଦ୍ୱେଷଭାବ ଆହୁରି ଉନ୍ମତ୍ତ ହେଲା। ଅବସ୍ଥା ଏପରି ହୋଇଛି ଯେ ବ୍ରିଟିଶ୍ ଓ ଫରାସୀ ପୁଞ୍ଜିପତିମାନେ ନିଜକୁ ଯେଉଁ ୱିଲ୍‌ହେଲ୍ମଙ୍କର ଶତ୍ରୁ ବୋଲି ଘୋଷଣା କରିଥିଲେ ସମାଜବାଦୀ ସୋଭିୟେତ୍ ପ୍ରଜାତନ୍ତ୍ରର ତୋଟି ଚିପି ମାରିବା ଉଦ୍ୟମରେ ସେଇ ୱିଲ୍‌ହେଲ୍ମଙ୍କ ସହ ଏକ ହୋଇ ସେନା ଠୁଳ କରିବା ଉପରେ। କାରଣ ସେମାନେ ଏଇ ଅନୁଭବରେ ପହଞ୍ଚିଛନ୍ତି ଯେ ଇଏ ଏକ କୌତୁହଳ ହେଇ ଆଉ ରହିନି କି ସମାଜବାଦର ଏକ ପରୀକ୍ଷାନୀରିକ୍ଷା ନୁହେଁ, ବିଶ୍ୱ ସମାଜବାଦୀ ବିପ୍ଳବର ଉର୍ବର କ୍ଷେତ୍ର — ବାସ୍ତବ, ବିଶୁଦ୍ଧ ଉର୍ବର କ୍ଷେତ୍ର — ହୋଇ ସାରିଛି। ତେଣୁ ଆମ ବିପ୍ଳବର ସଫଳତା ସହ ଆମର ଶତ୍ରୁ ସଂଖ୍ୟା ବଢ଼ି ଯାଇଛି। ଅବସ୍ଥାର ଗମ୍ଭୀରତାକୁ କୌଣସି ଭାବରେ ବି ନ ଲୁଚେଇ ଭବିଷ୍ୟତରେ କଅଣ ସବୁ ଘଟିପାରେ ତାକୁ ହୃଦ୍‌ବୋଧ କରିବା ଆବଶ୍ୟକ। ଏକେଲା ନୁହେଁ, ଭିଏନା ଓ ବର୍ଲିନ୍‌ର ଶ୍ରମିକମାନଙ୍କ ସହ ତାର ସାମନା କରିବା। ସେମାନେ ସେଇ ଲଢ଼େଇ ଆଡ଼କୁ ମୁହେଁଇଛନ୍ତି ଏବଂ ସମ୍ଭବତଃ ଆମର ସାଧାରଣ ଉଦ୍ଦେଶ୍ୟକୁ ଆହୁରି ଶୃଙ୍ଖଳିତ କରିବେ ଓ ତହିଁରେ ଅଧିକ ଶ୍ରେଣୀ–ଚେତନା ଭରିବେ।

ଆମ ସୋଭିୟେତ୍ ପ୍ରଜାତନ୍ତ୍ର ଉପରେ କି ଧରଣର ବାଦଲସବୁ ଜମା ହେଉଛି, ଓ ଆମକୁ ଭୟଭୀତ କରୁଥିବା ବିପଦସବୁ କଅଣ, ସେ ସମ୍ପର୍କରେ କିଛିଟା ଧାରଣା ଦେବା ଉଦ୍ଦେଶ୍ୟରେ ଜର୍ମାନ ସରକାର ତାଙ୍କ

ରାଷ୍ଟ୍ରପ୍ରତିନିଧିଙ୍କ ଜରିଆରେ ଆମ ନିକଟକୁ ପଠେଇଥିବା ସ୍ମାରକପତ୍ରକୁ ସମ୍ପୂର୍ଣ୍ଣ ରୂପେ ପଢୁଛି:

''ଜି. ଭି. ଚିଚେରିନ୍, ପିପୁଲସ୍ କମିଶାର, ବୈଦେଶିକ ବ୍ୟାପାର, ମସ୍କୋ, ନଭେମ୍ବର ୫, ୧୯୧୮ ।

''ଜର୍ମାନ ସମ୍ରାଟୀୟ ସରକାରଙ୍କ ନିର୍ଦ୍ଦେଶ ଅନୁସାରେ, ସମ୍ରାଟୀୟ ଜର୍ମାନ ରାଷ୍ଟ୍ରପ୍ରତିନିଧି ଋଷୀୟ ସଙ୍ଘୀୟ ସୋଭିୟେତ୍ ପ୍ରଜାତନ୍ତ୍ରକୁ ସମ୍ମାନର ସହ ଅନୁଗାମୀ ବିଷୟ ଜଣଉଛନ୍ତି: ବ୍ରେଷ୍ଟ-ଲିଟୋଭସ୍କ ଚୁକ୍ତିର ଧାରା ୨ କୁ ଲଙ୍ଘନ କରି କ୍ଷମତାପ୍ରାପ୍ତ ଋଷୀୟ କର୍ତ୍ତୃପକ୍ଷଙ୍କ ଦ୍ୱାରା ଜର୍ମାନ ରାଷ୍ଟ୍ରୀୟ ଅନୁଷ୍ଠାନଗୁଡ଼ିକ ବିରୁଦ୍ଧରେ କରା ଯାଉଥିବା ଅପପ୍ରଚାରକୁ ନେଇ ଜର୍ମାନ ସରକାର ଦୁଇ ଦୁଇଥର ପ୍ରତିବାଦ କରି ସାରିଛନ୍ତି। ଏହି ଅପପ୍ରଚାର କେବଳ କଥିତ ଚୁକ୍ତିର ସର୍ତ୍ତାବଳୀର ଖିଲାପ୍ କରୁନି, ସାଧାରଣ ଆନ୍ତର୍ଜାତିକ ପ୍ରଥା ଠାରୁ ବି ସାଙ୍ଘାତିକ ଭାବେ ଦୂରେଇ ଯାଉଛି। ତେଣୁ ଏହି ଅପପ୍ରଚାର ବିରୋଧୀ କାର୍ଯ୍ୟବିଧି ଏଣିକି ଆଉ ପ୍ରତିବାଦରେ ସୀମିତ ରହିବ ନାହିଁ।

''ଶାନ୍ତି ଚୁକ୍ତିର ସମ୍ପାଦନା ପରେ ସୋଭିୟେତ୍ ସରକାର ଯେତେବେଳେ ତାର କୁଟନୈତିକ ଦୂତାବାସ ବର୍ଲିନ୍‌ରେ ସ୍ଥାପନା କଲେ, ନିଯୁକ୍ତ ଋଷୀୟ ପ୍ରତିନିଧି, ହେର୍ ଯୋଫେ, ଜର୍ମାନୀରେ ଆନ୍ଦୋଳନ ଅବା ପ୍ରଚାର ନ କରିବା ଆବଶ୍ୟକତା ନେଇ ଏକ ସ୍ମାରକପତ୍ର ପାଇଥିଲେ। ତାର ଉତ୍ତରରେ ସେ କହିଥିଲେ ଯେ ବ୍ରେଷ୍ଟ-ଲିଟୋଭସ୍କ ଚୁକ୍ତିର ଧାରା ୨ ସହ ସେ ପରିଚିତ ଓ ଏକ ବିଦେଶୀ ଶକ୍ତିର ପ୍ରତିନିଧି ହିସାବରେ ତାଙ୍କ ଦାୟିତ୍ୱ ଦୃଷ୍ଟିରୁ ସେ ସଚେତନ ଯେ ଜର୍ମାନୀର ଆନ୍ତରୀଣ ବ୍ୟାପାରରେ ହସ୍ତକ୍ଷେପ କରିବା ଆଦୌ ଉଚିତ ନୁହେଁ। ତଦନୁସାରେ ହେର୍ ଯୋଫେ ଓ ତାଙ୍କ ଦାୟିତ୍ୱରେ ଥିବା ବିଭାଗଗୁଡ଼ିକ ବର୍ଲିନ୍‌ରେ ରାଜ୍ୟବହିଃସ୍ଥ

ବିଦେଶୀ ଦୂତାବାସଗୁଡ଼ିକ ସାଧାରଣଭାବେ ପାଉଥିବା ସମ୍ମାନ ଓ ବିଶ୍ୱାସ ଉପଭୋଗ କଲେ। ହେଲେ, ଏଇ ବିଶ୍ୱାସ ଶଠତାରେ ପରିଣତ ହୋଇଛି। କିଛି କାଳ ଧରି ଏହା ସ୍ପଷ୍ଟ ଯେ ଜର୍ମାନୀର ରାଜନୈତିକ ଧାରାକୁ ବିପର୍ଯ୍ୟସ୍ତ କରିବା ପାଇଁ କାର୍ଯ୍ୟ କରୁଥିବା ନିର୍ଦ୍ଦିଷ୍ଟ ଲୋକଙ୍କ ସହ ଋଷୀୟ ଦୂତାବାସର ନିବିଡ଼ ସମ୍ପର୍କ ରହିଛି, ଏବଂ, ଏଇ ଭଳିଆ ଲୋକଙ୍କୁ ଦୂତାବାସର ସେବାରେ ନିଯୁକ୍ତି ଦେଇ, ଜର୍ମାନୀର ସ୍ଥିତ ବ୍ୟବସ୍ଥାକୁ ବିପର୍ଯ୍ୟସ୍ତ କରିବା ଉଦ୍ଦେଶ୍ୟରେ ଚାଳିତ ଆନ୍ଦୋଳନରେ ଆଗ୍ରହୀ ହୋଇଛନ୍ତି।

''ଏହି ଘଟଣାଟି, ଯାହା ଚଳିତ ୪ ତାରିଖରେ ଘଟିଲା, ଦର୍ଶାଉଛି ଯେ ବିପ୍ଳବ ପାଇଁ ଆହ୍ୱାନ କରି ପ୍ରଚାରପତ୍ରମାନ ଆମଦାନି କରିବା ଦ୍ୱାରା ଋଷୀୟ ଦୂତାବାସ ପ୍ରଚଳିତ ବ୍ୟବସ୍ଥାକୁ ବିପର୍ଯ୍ୟସ୍ତ କରିବା ଉଦ୍ଦେଶ୍ୟରେ ଚାଳିତ ଆନ୍ଦୋଳନଗୁଡ଼ିକରେ ସକ୍ରିୟ ଭାଗ ନେଉଛି, ଓ ତଦ୍ୱାରା କୁଟନୈତିକ ବାର୍ତ୍ତାବହ ନିଯୁକ୍ତି ଦେବା ସୁବିଧାର ଦୁରୁପଯୋଗ କରୁଛି। ଗତକାଲି ବର୍ଲିନ୍‌ରେ ପହଞ୍ଚିଥିବା ଋଷୀୟ ବାର୍ତ୍ତାବହଙ୍କ ସରକାରୀ ଜିନିଷପତ୍ର ଥିବା ବାକ୍ସଗୁଡ଼ିକ ମଧ୍ୟରୁ ଗୋଟିଏ ପରିବହନ ବେଳେ ଭାଙ୍ଗି ଯାଇଥିବା କାରଣରୁ ଏହା ନିର୍ଣ୍ଣୟ କରା ଯାଇଥିଲା ଯେ ବାକ୍ସଗୁଡ଼ିକରେ ଜର୍ମାନ ଭାଷାରେ ମୁଦ୍ରିତ ବୈପ୍ଳବିକ ପ୍ରଚାରପତ୍ର ଥିଲା ଏବଂ, ସେଗୁଡ଼ିକର ବିଷୟବସ୍ତୁ ଦୃଷ୍ଟିରୁ ବିଚାର କଲେ, ଜର୍ମାନୀରେ ବାଣ୍ଟିବା ପାଇଁ ଉଦ୍ଦିଷ୍ଟ।

''ସମ୍ରାଟୀୟ ରାଷ୍ଟ୍ରଦୂତ, କାଉଣ୍ଟ୍ ମିରବାକ୍‌ଙ୍କ ହତ୍ୟାର ପ୍ରାୟଶ୍ଚିତ କରିବା ଦିଗରେ ସୋଭିୟେତ୍ ସରକାରଙ୍କ ଦ୍ୱାରା ନିଆ ଯାଇଥିବା ଦୃଷ୍ଟିକୋଣ ହେତୁ ଅଭିଯୋଗ ପାଇଁ ଜର୍ମାନ ସରକାରଙ୍କ ନିକଟରେ ଆହୁରି ଉପାଦାନ ରହିଛି। ସୋଭିୟେତ୍ ସରକାର ଗାମ୍ଭୀର୍ଯ୍ୟତା ସହ ଘୋଷଣା କଲେ ଯେ ତାଙ୍କର ସମସ୍ତ କ୍ଷମତା ଖଟେଇ ଦୋଷୀମାନଙ୍କୁ ବିଚାରାଳୟକୁ ଆଣିବେ। କିନ୍ତୁ ସେମାନଙ୍କର

ବିଚାର କରିବା ଓ ଦଣ୍ଡଦେବା ପାଇଁ ପଦକ୍ଷେପ ନେବା, ବା ସେଥିପାଇଁ ଇଚ୍ଛା ଥିବାର କୌଣସି ସୂଚନା ଜର୍ମାନ ସରକାର ଦେଖୁ ନାହାନ୍ତି। ରୁଷୀୟ ସରକାରଙ୍କ ସାଧାରଣ ସୁରକ୍ଷା କର୍ମୀମାନଙ୍କ ଦ୍ୱାରା ଚାରିଆଡୁ ଘେରଉ କରି ରଖିଥିବା ଏକ ଘରୁ ହତ୍ୟାକାରୀମାନେ ଖସି ଗଲେ। ଏହି ହତ୍ୟା ପାଇଁ ଉସ୍କାଇଥିବା ଲୋକମାନେ, ଯେଉଁମାନେ ଏହି ସମସ୍ତ ବ୍ୟାପାର ପଛରେ ରହିଥିବା ସର୍ବସାଧାରଣରେ ସ୍ୱୀକାର କରିଛନ୍ତି, ଆଜି ଯାଏଁ ଦଣ୍ଡ ପାଇ ନାହାନ୍ତି, ଏବଂ, ଯାହା ଖବର ମିଳିଛି, କ୍ଷମା କରିଦିଆ ଯାଇଛି।

''ଚୁକ୍ତିର ଓ ସାଧାରଣ ଆଇନକାନୁନର ଏଭଳି ଉଲ୍ଲଙ୍ଘନ ବିରୁଦ୍ଧରେ ଜର୍ମାନ ସରକାର ପ୍ରତିବାଦ କରେ। ଶାନ୍ତି ଚୁକ୍ତିର ବିରୁଦ୍ଧାଚରଣ କରୁଥିବା ଭଳି ଏଣିକି ଆଉ ଆନ୍ଦୋଳନ ଓ ପ୍ରଚାର କରାଯିବ ନାହିଁ ବୋଲି ଋଷ ସରକାରଙ୍କ ଠାରୁ ପ୍ରତିଶ୍ରୁତି ଦାବି କରିବା ପାଇଁ ଏହା ବାଧ ହେଉଛି। ପୁଣି ରାଜଦୂତ, କାଉଣ୍ଟ ମିର୍‌ବାକ୍‌ଙ୍କ ହତ୍ୟାର ପ୍ରାୟଶ୍ଚିତ ପାଇଁ ଦୁଷ୍କର୍ମ କରିଥିବା ଓ ସେଥିପାଇଁ ଉସ୍କେଇଥିବା ବ୍ୟକ୍ତିମାନଙ୍କ ଦଣ୍ଡବିଧାନ ପାଇଁ ଜୋର ଦିଏ। ଜର୍ମାନ ସରକାର ସୋଭିୟେତ୍ ପ୍ରଜାତନ୍ତ୍ରର ସରକାରଙ୍କୁ ଏହା ଅନୁରୋଧ କରିବା ପାଇଁ ବାଧ ହେଉଛି ଯେ ଏହି ଦାବିଗୁଡ଼ିକ ପୂରଣ ହେବା ଯାଏଁ ତାଙ୍କର କୁଟନୈତିକ ଓ ଅନ୍ୟ ପ୍ରତିନିଧିମାନଙ୍କୁ ଜର୍ମାନୀରୁ ଫେରେଇ ନିଅନ୍ତୁ। ଆଜି ବର୍ଲିନ୍‌ରେ ଋଷିଆର କ୍ଷମତାପ୍ରାପ୍ତ କୁଟନୈତିକ ଅଧିକାରୀଙ୍କୁ ଜଣେଇ ଦିଆଯାଇଛି ଯେ ବର୍ଲିନ୍‌ରେ ଥିବା କୁଟନୈତିକ ଓ ଦୂତାବାସ ପ୍ରତିନିଧିମାନଙ୍କର ତଥା ସହରରେ ଥିବା ଅନ୍ୟ ଋଷୀୟ ଅଧିକାରୀମାନଙ୍କ ପ୍ରସ୍ଥାନ ପାଇଁ ଆସନ୍ତାକାଲି ସନ୍ଧ୍ୟା ସୁଦ୍ଧା ଏକ ସ୍ୱତନ୍ତ୍ର ରେଳଗାଡ଼ିର ବ୍ୟବସ୍ଥା ହୋଇଯିବ, ଓ ବିନା ବାଧାବିଘ୍ନରେ ସମସ୍ତ ଋଷୀୟ କର୍ମଚାରୀଙ୍କୁ ଋଷିଆ ସୀମାରେ ପହଞ୍ଚେଇ ଦେବା ପାଇଁ ବିହିତ ପଦକ୍ଷେପ ନିଆଯିବ। ସୋଭିୟେତ୍ ସରକାରଙ୍କୁ ଅନୁରୋଧ କରୁ ଯେ ମସ୍କୋ ଓ

ପେଟ୍ରୋଗ୍ରାଦ୍‌ର ଜର୍ମାନ ପ୍ରତିନିଧିମାନଙ୍କୁ, ଶିଷ୍ଟତାର ସମସ୍ତ ଦିଗକୁ ଧ୍ୟାନ ଦେଇ, ସେଇ ଏକା ସମୟରେ ଫେରିବା ପାଇଁ ସକ୍ଷମ କରିବେ। ଜର୍ମାନୀରେ ଥିବା ଅନ୍ୟ ଋଷୀୟ ପ୍ରତିନିଧିମାନଙ୍କୁ, ଓ ସେହିପରି ଋଷିଆର ଅନ୍ୟାନ୍ୟ ଅଞ୍ଚଳରେ ଥିବା ଜର୍ମାନ କର୍ମଚାରୀମାନଙ୍କୁ ଏକ ସପ୍ତାହ ମଧ୍ୟରେ ନିଶ୍ଚିତ ରୂପେ ନିଜ ନିଜର ଦେଶକୁ ଫେରିବା ପାଇଁ ଜଣେଇ ଦିଆଯିବ। ଜର୍ମାନ ସରକାର ଏହି ଆଶା ରଖି ଏହାକୁ ସମାପ୍ତ କରୁଛି ଯେ ପରେ ଫେରୁଥିବା ଜର୍ମାନ କର୍ମଚାରୀଙ୍କ କ୍ଷେତ୍ରରେ ବି ସେହିଭଳି ଶିଷ୍ଟତାର ସମସ୍ତ ଦିଗକୁ ଧ୍ୟାନ ଦିଆଯିବ, ଓ ଜର୍ମାନ ଶାସିତ ତଥା ଜର୍ମାନ ଆଶ୍ରିତ ଅନ୍ୟ ବ୍ୟକ୍ତିମାନେ ଯଦି ଅନୁରୋଧ କରନ୍ତି ତେବେ ସେମାନଙ୍କୁ ବି ବିନା ବାଧାରେ ପ୍ରସ୍ଥାନ କରିବା ସୁଯୋଗ ଦିଆଯିବ।"

ଆମେ ସମସ୍ତେ, ସାଥୀଗଣ, ଭଲକରି ଜାଣିଛେ ଯେ ଜର୍ମାନ୍ ସମାଜବାଦୀମାନେ ଋଷୀୟ ଦୂତାବାସର ଆତିଥ୍ୟ ଉପଭୋଗ କରିଥିବା ଓ ଜର୍ମାନ୍ ସାମ୍ରାଜ୍ୟବାଦର କୌଣସି ବି ସମର୍ଥକ ଋଷୀୟ ଦୂତାବାସର ଦ୍ୱାର ମାଡ଼ି ନଥିବା ସମ୍ପର୍କରେ ଜର୍ମାନ୍ ସରକାର ସମ୍ପୂର୍ଣ୍ଣ ରୂପେ ଅବଗତ ଅଛନ୍ତି। ଦୂତାବାସର ବନ୍ଧୁ ଥିଲେ ସେଇ ସମାଜବାଦୀମାନେ ଯେଉଁମାନେ ଯୁଦ୍ଧର ବିରୋଧ କରୁଥିଲେ ଓ କାର୍ଲ ଲିବ୍‌କ୍ନେଖତ୍‌ଙ୍କ ପ୍ରତି ସହାନଭୂତିଶିଳ ଥିଲେ। ଦୂତାବାସ ଖୋଲିବା ଦିନଠାରୁ ସେମାନେ ତାର ଅତିଥି ଥିଲେ ଓ ଆମେ କେବଳ ସେମାନଙ୍କ ସହ କାରବାର କରୁଥିଲୁ। ସେକଥା ଜର୍ମାନ ସରକାର ଭଲ ରୂପେ ଅବଗତ ଥିଲେ। ନିକୋଲାସ୍ ଦ୍ୱିତୀୟଙ୍କ ସରକାର ଆମ ସାଥୀମାନଙ୍କ ଗତିବିଧି ଉପରେ ନଜର ରଖୁଥିଲା ଭଳି ଜର୍ମାନ ସରକାର ଆମ ସରକାରଙ୍କର ପ୍ରତ୍ୟେକ ପ୍ରତିନିଧିଙ୍କ ଗତିବିଧି ଉପରେ ନଜର ରଖୁଥିଲା। ପରିସ୍ଥିତିରେ କୌଣସି ଧରଣର ପରିବର୍ତ୍ତନ ହେଇଥିବା ଯୋଗୁଁ

ଜର୍ମାନ୍ ସରକାର ଏହି ଗୋଟି ଚଳଉନି। ଚଳେଇବାର କାରଣ ହେଉଛି ପୂର୍ବେ ଏହା ନିଜକୁ ଅଧିକ ବଳୀୟାନ୍ ମନେ କରୁଥିଲା, ବର୍ଲିନ୍ ସହରର ଗଳିକନ୍ଦିରେ କେଉଁଠି ଗୋଟିଏ ଘର ‘‘ଜଳିଗଲେ’’ ସାରା ଜର୍ମାନୀରେ ନିଆଁ ଜଳିବା ଭୟ ତାର ନଥିଲା। ଜର୍ମାନ ସରକାରର ମତି ଗତି ଠିକ୍ ନାହିଁ, ଏବଂ ବର୍ତ୍ତମାନ ସାରା ଜର୍ମାନୀ ଜଳୁଥିବା ଦେଖି ଭାବୁଛି ଯେ ପୋଲିସ୍ ନଳୀରେ ଗୋଟିଏ ଘରର ନିଆଁ ଲିଭେଇ ସାରା ଜର୍ମାନୀର ନିଆଁ ଲିଭେଇ ଦେବ।

ନିହାତି ହାସ୍ୟାସ୍ପଦ କଥା। ଜର୍ମାନ୍ ସରକାର ଯଦି କୂଟନୈତିକ ସମ୍ପର୍କ ଛିନ୍ନ କରିବା ପାଇଁ ଚାହୁଁଛନ୍ତି, ତେବେ ଆମେ କେବଳ ଏତିକି କହିବୁ ଯେ ସେ ତାହା କରିବ ବୋଲି ଆମେ ଜାଣିଥିଲୁ। ଏହା ବି ଜାଣିଛୁ ଯେ ବ୍ରିଟିଶ୍ ଓ ଫରାସୀ ସାମ୍ରାଜ୍ୟବାଦୀଙ୍କ ସହ ମିତ୍ରତା ସ୍ଥାପନ ପାଇଁ ଯାହାସବୁ କରି ପାରୁଛି କରୁଛି। ପୋଲାଣ୍ଡ, ୟୁକ୍ରେନ୍, ଇସ୍ତୋନିଆ ଓ ଲାଟାଭିଆରେ ଜର୍ମାନ ସୈନ୍ୟଙ୍କୁ ରହିବା ପାଇଁ ଦେବା ଅନୁରୋଧରେ ଓ୍ୱିଲ୍‌ସନ୍‌ଙ୍କ ସରକାର ଟେଲିଗ୍ରାମ୍ ପରେ ଟେଲିଗ୍ରାମ୍ ପାଉଥିବା ଆମେ ଜାଣିଛୁ। ସେମାନେ ଜର୍ମାନ ସାମ୍ରାଜ୍ୟବାଦର ବିରୋଧୀ ହୋଇଥିଲେ ବି, ଜର୍ମାନ୍ ସୈନ୍ୟମାନେ ସେମାନଙ୍କ କାମ କରୁଛନ୍ତି: ବଲ୍‌ଶେଭିକ୍‌ମାନଙ୍କୁ ଦମନ କରୁଛନ୍ତି। ବଲ୍‌ଶେଭିକ୍‌ମାନଙ୍କ ତୋଟି ଚିପିବା ପାଇଁ ବନ୍ଧୁତା-ସପକ୍ଷୀ ‘‘ମୁକ୍ତି ସେନାମାନେ’’ ଘଟଣାସ୍ଥଳରେ ହାଜର ହେଲେ ସେମାନେ ଯାଇ ପାରନ୍ତି।

ଯାହାସବୁ ହେଉଛି ଆମେ ଭଲ ରୂପେ ଜାଣିଛୁ ଏବଂ ସେଥିରୁ କୌଣସି ବି କଥା ଅପ୍ରତ୍ୟାଶିତ ନୁହେଁ। ଆମେ କହିଥିବା କଥାକୁ କେବଳ ଦୋହୋରେଇବୁ ଯେ ଯେହେତୁ ଜର୍ମାନୀ ବର୍ତ୍ତମାନ ଜଳୁଛି ଓ ଅଷ୍ଟ୍ରିଆ ସାରା

ଉତ୍ତେଜନା ଦେଖା ଦେଇଛି, ଯେହେତୁ ବର୍ତ୍ତମାନ ଲିବ୍‌କ୍ନେଖଟ୍‌ଙ୍କୁ ମୁକ୍ତ କରି ଋଷ ଦୂତାବାସକୁ ଯିବା ପାଇଁ ଅନୁମତି ଦେବା ପାଇଁ ବାଧ୍ୟ ହୋଇଛନ୍ତି ତଥା ଋଷ ଦୂତାବାସରେ ଋଷ ଓ ଜର୍ମାନ ସମାଜବାଦୀମାନଙ୍କର ଏକ ମିଳିତ ସଭା ତାଙ୍କ ଅଧ୍ୟକ୍ଷତାରେ ହୋଇ ସାରିଛି, ଜର୍ମାନ୍ ସରକାର ପକ୍ଷରେ ଏଭଳି ପଦକ୍ଷେପ ଯୁଦ୍ଧ ଚାହିଁବାଟା ଦର୍ଶଉନି, ଦର୍ଶଉଛି ହତ ବୁଦ୍ଧି ହେବାଟା। ସେମାନେ କୌଣସି ନିଷ୍ପତ୍ତି ନେଇପାରୁ ନଥିବା ଦର୍ଶଉଛି, କାରଣ ସମସ୍ତଙ୍କର ନିହାତି ନୃଶଂସ ଶତ୍ରୁ, ବ୍ରିଟିଶ୍‌-ଆମେରିକା ସାମ୍ରାଜ୍ୟବାଦ ତାଙ୍କ ଆଡ଼କୁ ମୁହାଁଇଛି। ସେହି ଶତ୍ରୁ ବ୍ରେଷ୍ଟ-ଲିଟୋଭସ୍କ ଶାନ୍ତି ଚୁକ୍ତିଠୁଁ ଶହେ ଗୁଣ ଦୁର୍ବହ ଶାନ୍ତି ସର୍ତ୍ତମାନ ଚାପି ଦେଇ ଅଷ୍ଟ୍ରିଆକୁ ଚୁନା କରି ଦେଇଛି। ଜର୍ମାନୀ ଦେଖୁଛି ଯେ ଏହି ମୁକ୍ତିଦାତାମାନେ ତାକୁ ବି ତୋଟି ଚିପି, ଚୁନା କରି, ଯନ୍ତ୍ରଣା ଦେବା ପାଇଁ ଚାହୁଁଛନ୍ତି। କିନ୍ତୁ ସେଇ ଏକା ସମୟରେ ଜର୍ମାନୀର ଶ୍ରମିକମାନେ ବିଦ୍ରୋହ କରୁଛନ୍ତି। ଜର୍ମାନ ସେନା ଯୁଦ୍ଧ ପାଇଁ ଅପାରଗ ଓ ଅଯୋଗ୍ୟ ପ୍ରମାଣିତ ହୋଇଛି, ଶୃଙ୍ଖଳାଗତ ଦୁର୍ବଳତା ଯୋଗୁ ନୁହେଁ, ଯେଉଁମାନେ ଯୁଦ୍ଧ କରିବାକୁ ମନା କଲେ ସେମାନଙ୍କୁ ପୂର୍ବ ଯୁଦ୍ଧକ୍ଷେତ୍ରରୁ ଜର୍ମାନୀର ପଶ୍ଚିମ ଯୁଦ୍ଧକ୍ଷେତ୍ରକୁ ବଦଳି ତଥା ବୁର୍ଜୁଆ ଶ୍ରେଣୀ ଯାହାକୁ ବିଶ୍ୱ ବଲ୍‌ଶେଭିକ୍‌ବାଦ ବୋଲି କହୁଛି ସେମାନେ ତାକୁ ସଙ୍ଗରେ ନେଇଥିବା ଯୋଗୁଁ।

ସେଥିଯୋଗୁଁ ହିଁ ଜର୍ମାନ ସେନା ଲଢ଼େଇ ପାଇଁ ଅଯୋଗ୍ୟ ଓ ଏହି ଦଲିଲ୍‌ଟି ଜର୍ମାନୀର ଚରମ ବିଭ୍ରାନ୍ତିର ଅତି ଉତ୍ତମ ପ୍ରମାଣ। ଆମେ କହୁଛୁ ଯେ ଏହା କୂଟନୈତିକ ସମ୍ପର୍କରେ ଫାଟ ସୃଷ୍ଟି କରିବ, ଏବଂ ସମ୍ଭବତଃ ଯୁଦ୍ଧ ଆଡ଼କୁ ଯିବ ଯଦି ସେମାନେ ହ୍ୱାଇଟ ଗାର୍ଡ଼ (ଶ୍ୱେତ ରକ୍ଷୀ) ସେନାଙ୍କୁ ନେତୃତ୍ୱ

ଦେବା ପାଇଁ ଶକ୍ତି ପାଇବେ। ତେଣୁ ଆମେ ଡେପୁଟିମାନଙ୍କ ସୋଭିଯେତ୍‌ଗୁଡ଼ିକୁ ଟେଲିଗ୍ରାମ ପଠେଇଛୁ, ଯାହାର ଶେଷରେ ସେମାନଙ୍କର ସମସ୍ତ ଶକ୍ତିକୁ ଠୁଳ କରିବା ପାଇଁ, ସଦା ପ୍ରସ୍ତୁତ ରହିବା ପାଇଁ, ନିଜ ସୁରକ୍ଷା ପ୍ରତି ଜାଗ୍ରତ ରହିବା ପାଇଁ ସତର୍କ କରିଦିଆ ଯାଇଛି। କାରଣ, ବଲ୍‌ଶେଭିକ୍‌ବାଦକୁ ପରାସ୍ତ କରିବା ପାଇଁ ଆନ୍ତର୍ଜାତିକ ସାମ୍ରାଜ୍ୟବାଦର ଯେଉଁ ମୂଖ୍ୟ ଲକ୍ଷ୍ୟ ରହିଛି ଇଏ ତାହାର ଅନ୍ୟ ଏକ ସଙ୍କେତ ଛଡ଼ା ଅନ୍ୟ କିଛି ନୁହେଁ। ତାହା କେବଳ ଋଷିଆକୁ ପରାସ୍ତ କରିବା ବୁଝାଏନା। ନିଜ ନିଜ ଦେଶର ଶ୍ରମିକମାନଙ୍କୁ ପରାସ୍ତ କରିବା ବି ବୁଝାଏ। କିନ୍ତୁ ଏହି ନିଷ୍ପତ୍ତିକୁ କାର୍ଯ୍ୟକାରୀ କରିବାକୁ ଯାଇ ସେମାନେ କେତେ ନୃଶଂସ ହୁଅନ୍ତୁ ନା କାହିଁକି, କେତେ ଦୌରାତ୍ମ୍ୟ କରନ୍ତୁ ନା କାହିଁକି, ସଫଳ ହେବେନି। ଏହି ଶାଗୁଣାମାନେ ଦାରଦାନେଲେସ୍ ଦେଇ ହେଉ, ଅବା ବୁଲ୍‌ଗେରିଆ ଓ ରୁମାନିଆ ଆଡ଼ୁ ଋଷିଆ ଉପରେ ଝାମ୍ପି ପଡ଼ିବା ପାଇଁ ପ୍ରସ୍ତୁତ ହେଉଛନ୍ତି। ଋଷିଆ ବିରୁଦ୍ଧରେ ଠିଆ କରେଇବା ପାଇଁ ଜର୍ମାନୀରେ ଏକ ଶ୍ୱେତ ସେନା ଗଠନ ଉଦ୍ଦେଶ୍ୟରେ ସେମାନେ ଆଲୋଚ଼ନା ଚଳେଇଛନ୍ତି। ଆମେ ଏହି ବିପଦ ସମ୍ପର୍କରେ ସମ୍ପୂର୍ଣ୍ଣ ରୂପେ ସଚ଼େତନ ଅଛୁ, ଏବଂ ଅତି ସ୍ୱଷ୍ଟ ଭାଷାରେ କହିବାକୁ ଚାହୁଁ ଯେ ଆମେ ବର୍ଷେ ହେଲା ହାତ ବାନ୍ଧି ବସି ନଥିଲୁ; ଆମେ ଭିତ୍ତି ସ୍ଥାପନା କରିଛୁ, ନିଷ୍ପତ୍ତିମୂଳକ ଯୁଦ୍ଧ ପାଇଁ ପ୍ରସ୍ତୁତ ରହିଛୁ। ବାସ୍ତବରେ ସେ ଯୁଦ୍ଧ ନିଷ୍ପତ୍ତିମୂଳକ ହେବ। କିନ୍ତୁ ଆମେ ଏକେଲା ନୋହୁ: ପଶ୍ଚିମ ୟୁରୋପର ଶ୍ରମିକ ଶ୍ରେଣୀ ଲଢ଼େଇର ମଇଦାନରେ ଓ ସମଗ୍ର ଅଷ୍ଟ୍ରିଆ–ହଙ୍ଗେରୀକୁ ଦୋହଲଉଛି। ସେ ଦେଶର ସରକାର ୧୯୧୯ ଫେବୃଆରୀ ମାସରେ ନିକୋଲାସ୍ ରୋମାନୋଭ୍‌ଙ୍କ ସରକାର ଯେମିତି ଅସହାୟ ଥିଲା

ସେମିତି ଅସହାୟ, ଯେମିତି ଉଚ୍ଛୃଙ୍ଖଳିତ ବିଭ୍ରାନ୍ତିରେ ଥିଲା ସେମିତି ଉଚ୍ଛୃଙ୍ଖଳିତ ବିଭ୍ରାନ୍ତିରେ, ଯେମିତି କିଂକର୍ତ୍ତବ୍ୟବିମୂଢ଼ ଥିଲା ସେମିତି କିଂକର୍ତ୍ତବ୍ୟବିମୂଢ଼। ଆମର ସ୍ଲୋଗାନ୍ ହେବାକୁ ହେବ: ଲଢ଼େଇ ପାଇଁ ପୁଣି ଥରେ ସମସ୍ତ ଶକ୍ତି ଜୁଟାଅ, ଏବଂ ଏହା ମନେ ରଖ ଯେ ଆମେ ଏକ ଶେଷ ଓ ନିଷ୍ପତ୍ତିମୂଳକ ଯୁଦ୍ଧର ସାମନା କରୁଛେ — କେବଳ ଋଷୀୟ ବିପ୍ଳବ ପାଇଁ ନୁହେଁ, ସାମନା କରୁଛେ ବିଶ୍ୱ ସମାଜବାଦୀ ବିପ୍ଳବ ପାଇଁ।

ଆମେ ଜାଣୁ ଯେ ସାମ୍ରାଜ୍ୟବାଦୀ ଶାଗୁଣାଗୁଡ଼ାକ ଆଜି ବି ଆମଠାରୁ ଅଧିକ ବଳିୟାନ୍। ସେମାନେ ଆଜି ବି ଆମ ଦେଶରେ ଧ୍ୱଂସ, ନୃଶଂସତା ଓ ବର୍ବରତାର ତାଣ୍ଡବ ଲୀଳା କରିବା ପାଇଁ ସକ୍ଷମ। କିନ୍ତୁ ସେମାନେ ବିଶ୍ୱ ବିପ୍ଳବକୁ ପରାସ୍ତ କରି ପାରିବେନି। ସେମାନଙ୍କ ହୃଦୟରେ ଭୟଙ୍କର ଘୃଣା ଭରି ରହିଛି, ତେଣୁ ଆମେ ନିଜକୁ କହୁ ଯେ ଯାହା ଘଟିଲେ ବି ଋଷିଆର ପ୍ରତ୍ୟେକ ଶ୍ରମିକ, ପ୍ରତ୍ୟେକ ଚାଷୀ ତାର ଦାୟିତ୍ୱ ସମ୍ଭାଳିବ ଓ ବିପ୍ଳବର ସୁରକ୍ଷା ପାଇଁ ଯଦି ପ୍ରୟୋଜନ ହୁଏ ସେ ମୃତ୍ୟୁର ସାମନା କରିବ। ଆମ ଉପରେ ଯେତେ ଦୁଃଖଯନ୍ତ୍ରଣା ଲଦି ଦେଲେ ବି ସେମାନେ ସୁରକ୍ଷିତ ରହି ପାରିବେ ନି। ସାମ୍ରାଜ୍ୟବାଦର ବିନାଶ ହେବ ଓ ପରିସ୍ଥିତି ଯେତେ ଅଖାଡୁଆ ହେଲେ ବି ବିଶ୍ୱ ସମାଜବାଦୀ ବିପ୍ଳବର ବିଜୟ ହେବ।

[ଭି. ଆଇ. ଲେନିନ, *ସଂଗୃହୀତ ରଚନାବଳୀ* (ଇଂରାଜି), ଖଣ୍ଡ ୨୮, ପୃଷ୍ଠା ୧୩୭–୧୪୦]